ଗ୍ରୀଷ୍ମଦିନ ।

ଯୁବକଟି ନିଜ ବଗିଚା ଭିତରେ ଗୋଟିଏ ଆପଲଗଛ ମୂଳେ ଚୁପ ହୋଇ ବସିଛି । ଏତିକିବେଳେ ପାଚିଲା ଆପଲଟିଏ ତା ପାଦ ପାଖରେ ଖସି ପଡ଼ିଲା । ତା ମନରେ କୌତୂହଳର ସୀମା ନାହିଁ । ଆପଲ ସବୁଦିନେ ପଡ଼େ, ସମସ୍ତେ ଦେଖନ୍ତି, ସେ ବି ଆଗରୁ ଅନେକ ଥର ଦେଖିଛି; କିନ୍ତୁ ଏଥରକ ଦେଖିବା ପରେ ସେ ସ୍ଥିର ହୋଇ ରହିପାରିଲା ନାହିଁ । ସେ ଭାବିବାକୁ ଲାଗିଲା । ଆପଲଟି ତଳେ କାହିଁକି ଖସି ପଡ଼ିଲା ? ଉପରକୁ ଉଠି ନ ଗଲା କାହିଁକି ? ଅଦ୍ଭୁତ ପ୍ରଶ୍ନ !

ବହୁଥର ଭାବି ଶେଷରେ ସେ ଠିକ୍ କଲା, ବୋଧହୁଏ ପୃଥିବୀର ଗୋଟିଏ ଅଦ୍ଭୁତ ଟାଣିବା ଶକ୍ତି ଅଛି, ଯାହା ଫଳରେ ଆପଲଟି ଉପରକୁ ଉଠି ନ ଯାଇ ଟାଣି ହୋଇ ଆସି ମାଟି ଉପରେ ଖସି ପଡ଼ିଲା । ପୃଥିବୀର ଯେ ଗୋଟିଏ ଟାଣିବା ଶକ୍ତି ଅଛି ଏକଥା ଆଗରୁ କେହି ଜାଣି ନଥିଲେ । ଏ କଥା ଯେ ପ୍ରଥମେ ଲୋକମାନଙ୍କୁ ଜଣାଇଲେ ସେ ହେଉଛନ୍ତି ଏଇ ଭାବୁକ ଯୁବକ । ସେ ପୃଥିବୀର ଏଇ ଟାଣିବା ଶକ୍ତି ( ମାଧ୍ୟାକର୍ଷଣ ଶକ୍ତି ) କୁ ଆବିଷ୍କାର କରି ଶ୍ରେଷ୍ଠ ବୈଜ୍ଞାନିକ ଭାବରେ ପୃଥିବୀରେ ଅମର ହୋଇଛନ୍ତି । ତାଙ୍କ ନାଁ ହେଉଛି—ସାର ଆଇଜାକ୍ ନିଉଟନ୍ ।

ଇଂଲଣ୍ଡର ଗୋଟିଏ ଅଞ୍ଚଳର ନାମ ଲିଙ୍କନସାୟାର । ଲିଙ୍କନସାୟାରର ଗୋଟିଏ ଛୋଟ ସହର ନାଁ—ଗ୍ରାଣ୍ଟହ୍ୟାମ୍ । ଏ ସହରର ସାତ ମାଇଲ ଦୂରରେ ଗୋଟିଏ ଛୋଟ ଗାଁ—ନାଁ

ଉଲସ୍‌ଥର୍ପ । ଏଇ ଛୋଟ ଗାଁଟିକୁ କିଏ ବା କାହିଁକି ଜାଣିଥାନ୍ତା, ଯଦି ପୃଥିବୀର ଶ୍ରେଷ୍ଠ ମନୀଷୀ ନିଉଟନ ସେଠାରେ ଜନ୍ମ ହୋଇ ନଥାନ୍ତେ !

ନିଉଟନଙ୍କ ପୂର୍ବପୁରୁଷମାନେ ଧନୀ କୃଷକ ଥିଲେ । କିନ୍ତୁ ନିଉଟନଙ୍କ ପିତାମହ ରବର୍ଟ ନିଉଟନ ସେହି ଗାଁ ଜମିଦାରଙ୍କ ଖଣ୍ଡିଏ ପୁରୁଣା କୋଠାଘର ଭଡ଼ା ନେଇ ରହୁଥିବାରୁ ଗାଁରେ ସେମାନଙ୍କର ସମ୍ମାନ ଓ ଖାତିର ଢେର ବଢ଼ିଯାଇଥିଲା । ଫଳରେ ସେମାନେ ନିଜକୁ ବାବୁଭୟା ଶ୍ରେଣୀର ଲୋକ ବୋଲି ପରିଚୟ ଦେଉଥିଲେ ।

ସାର ଆଇଜାକ୍‌ଙ୍କ ବାପାଙ୍କ ନାଁ ମଧ୍ୟ 'ଆଇଜାକ୍' ଥିଲା । ବିବାହର ଅଳ୍ପଦିନ ପରେ ମାତ୍ର ୩୭ ବର୍ଷ ବୟସରେ 'ଆଇଜାକ'ଙ୍କ ମୃତ୍ୟୁ ହେଲା । ସେତେବେଳେ 'ଆଇଜାକ'ଙ୍କ ସ୍ତ୍ରୀ ହ୍ୟାନା ଥିଲେ ଗର୍ଭବତୀ । ସ୍ୱାମୀଙ୍କ ମୃତ୍ୟୁରେ ସେ ଅତିଶୟ କାତର ହୋଇ ପଡ଼ିଥିଲେ ।

୧୬୪୨ ଖ୍ରୀଷ୍ଟାବ୍ଦ । ଏଇ ବର୍ଷ ସେ ସମୟର ପୃଥିବୀର ଶ୍ରେଷ୍ଠ ବୈଜ୍ଞାନିକ ଗାଲିଲିଓଙ୍କ ମୃତ୍ୟୁ ହେଲା । ଆଉ ଠିକ୍ ସେଇ ବର୍ଷ ଡିସେମ୍ବର ୨୫ ତାରିଖରେ ଯେଉଁ ଶିଶୁଟି ହ୍ୟାନାଙ୍କ କୋଳରେ ଜନ୍ମଲାଭ କଲା, ଗାଲିଲିଓଙ୍କ ପରେ ସେ ହିଁ ହେଲା ପୃଥିବୀର ସର୍ବଶ୍ରେଷ୍ଠ ବୈଜ୍ଞାନିକ ।

ଛୋଟ ଶିଶୁଟି । ଦେହରେ ଟିକିଏ ହେଲେ ବଳ ନାହିଁ । ମୁଣ୍ଡଟା ନଡ଼ ନଡ଼ ହେଉଛି । କୌଣସିମତେ ଚକିଆ ଡିବା ଦିଆ ହୋଇ ସିଧା ରଖା ଯାଇଛି । ସମସ୍ତେ ଏ ନିର୍ଜୀବା ଶିଶୁଟିର ବଞ୍ଚିବା ଆଶା

ଛୁଡଦେଇ ବସିଲେ । କିନ୍ତୁ ଶେଷରେ ସମସ୍ତଙ୍କୁ ଅବାକ୍ କରିଦେଲା ଶିଶୁଟି । ଦେଖୁ ଦେଖୁ କେଇଟି ଦିନ ଭିତରେ ମୋଟା ମୋଟି ହୋଇ ମଣିଷ ଛୁଆ ଭଳିଆ ଦିଶିଲା । ଦୁଃଖିନୀ ମା ମନରେ ଆନନ୍ଦର ତେଉ ଖେଳିଯାଇଥିଲା ସେଦିନ । ସ୍ୱାମୀ ମୃତ୍ୟୁର ଦୁଃଖ ଟିକିଏ ଲାଘବ ହେଲା । ପ୍ରିୟତମ ସ୍ୱାମୀଙ୍କ ନାମ ଅନୁକରଣରେ ସେ ନିଜ ପିଲାଟିର ନାଁ ରଖିଲେ 'ଆଇଜାକ' । ଏଇ ହେଉଛନ୍ତି ଆମର ମହାମନୀଷୀ ସାର୍ ଆଇଜାକ୍ ନିଉଟନ ।

ଆଇଜାକ୍‌ଙ୍କ ବୟସ ଯେତେବେଳେ ମୋଟେ ଦୁଇବର୍ଷ, ତାଙ୍କ ମା ସ୍ମିଥ୍ ନାମକ ଜଣେ ପାଦ୍ରୀଙ୍କୁ ପୁଣି ବିବାହ କଲେ । ଖ୍ରୀଷ୍ଟାନଧର୍ମରେ ଏ ବିବାହ କୌଣସି ଅସାମାଜିକ କାମ ନହେଲେ ମଧ୍ୟ ସେ ଏ ବିବାହରେ ପ୍ରଥମେ ରାଜି ହେଉ ନଥିଲେ । ପରେ ତାଙ୍କ ଭାଇ ଓ ବନ୍ଧୁବାନ୍ଧବମାନେ ମତ ଦେବାରୁ ବିବାହ ହୋଇଗଲା । କିନ୍ତୁ ହ୍ୟାନା ଏ ବିବାହ ଫଳରେ ନିଜ ପୁଅଟିର କିଛି ଅନିଷ୍ଟ ହେଉ ଏହା ସେ ଚାହୁଁ ନଥିଲେ । ସେଥିପାଇଁ ସ୍ମିଥ୍‌ଙ୍କ ସହିତ ଗୋଟିଏ ଚୁକ୍ତି କରିନେଲେ ଯେ, ମୃତ ସ୍ୱାମୀର ସମ୍ପତ୍ତି ଉପରେ ତାର କୌଣସି ଅଧିକାର ରହିବ ନାହିଁ ବରଂ ସ୍ମିଥ୍‌ଙ୍କ ନିଜ ସମ୍ପତ୍ତିରୁ କିଛି ଅଂଶ ଶିଶୁ ଆଇଜାକ୍‌ଙ୍କ ନାଁରେ ଲେଖିଦେବାକୁ ହେବ । ସ୍ମିଥ୍ ଖୁସିରେ ଏଥିରେ ରାଜି ହୋଇଗଲେ । ବିବାହପରେ ହ୍ୟାନା ସ୍ମିଥ୍‌ଙ୍କ ଗାଁକୁ ଚାଲି ଆସିବାରୁ ଆଇଜାକ୍ ନିଜ ମାମୁଁଙ୍କ ତତ୍ତ୍ୱାବଧାନରେ ରହି ବଡ଼ ହେବାକୁ ଲାଗିଲେ ।

ଗାଁ ପାଖ ସ୍କୁଲରେ ଆଇଜାକ୍‌ଙ୍କ ବାଲ୍ୟଶିକ୍ଷା ଆରମ୍ଭ ହେଲା । ପ୍ରତିଦିନ ଘରୁ ଚାଲି ଚାଲି ସେ ସ୍କୁଲକୁ ଯାଉଥିଲେ । ତାଙ୍କୁ ଯେତେବେଳେ ୧୨ ବର୍ଷ, ଗାଁ ସ୍କୁଲର ପଢ଼ା ଶେଷ ହେଲା । ତାପରେ ଗ୍ରାଣ୍ଟହ୍ୟାମ୍ ସହରରେ ଥିବା କିଂଗସ୍ ସ୍କୁଲରେ ଉଚ୍ଚ ଶିକ୍ଷା ପାଇଁ ତାଙ୍କ ନାମ ଲେଖାଇ ଦିଆଗଲା । ଗ୍ରାଣ୍ଟହ୍ୟାମ ସହରଟି ଗାଁ ପାଖରୁ ଖୁବ୍ ଦୂରରେ ଥିଲା । ଏଣୁ ଗାଁରୁ ପ୍ରତିଦିନ ଯାଇ ସହରରେ ପାଠ ପଢ଼ିବା ସମ୍ଭବ ନଥିଲା । ସହରର ଜଣେ କମ୍ପାଉଣ୍ଡର ମି କ୍ଲାର୍କଙ୍କ ସ୍ତ୍ରୀଙ୍କ ସହିତ ଆଇଜାକ ମା'ଙ୍କର ଖୁବ୍ ବନ୍ଧୁତା ଥାଏ । ଏଇ ମି. କ୍ଲାର୍କଙ୍କ ଘରେ ରହି ଆଇଜାକ କିଂଗସ୍ ସ୍କୁଲରେ ପଢ଼ିବାକୁ ଲାଗିଲେ । ଏଇଠି ତାଙ୍କର ଚାରୋଟି ବର୍ଷ ବିତିଗଲା ।

ଏଇ ସମୟରେ ସ୍ମିଥ୍ ମରିଯିବାରୁ ମା' ପୁଣି ଫେରି ଆସିଲେ ଉଲ୍‌ସଥର୍ପ ଗାଁକୁ । ସେତେବେଳେ ସ୍ମିଥ୍‌ଙ୍କର ଗୋଟିଏ ପୁଅ ଓ ଦୁଇଟି ଝିଅ ହୋଇଥାଏ । ମା' ସବୁ ଛୁଆପିଲାଙ୍କୁ ସାଙ୍ଗରେ ନେଇ ଗାଁକୁ ଚାଲି ଆସିଲେ ।

ନିଉଟନ୍ ଓ ସ୍ମିଥ୍‌ଙ୍କ ସମ୍ପତ୍ତି ମିଶିଯିବା ଫଳରେ ସମ୍ପତ୍ତିର ପରିମାଣ ବେଶ ବଢ଼ିଗଲା । କିନ୍ତୁ ଉପଯୁକ୍ତ ଲୋକ ଅଭାବରୁ ସେଗୁଡ଼ାକ ଭଲ ଭାବରେ ପରିଚାଳନା ହୋଇପାରିଲା ନାହିଁ । ଶେଷରେ ମା' ଭାବିଚିନ୍ତି ସ୍କୁଲପଢ଼ା ବନ୍ଦ କରାଇ ଆଇଜାକ୍‌ଙ୍କୁ ଗାଁକୁ ନେଇ ଆସିଲେ । ଆଇଜାକ୍‌ଙ୍କୁ ସେତେବେଳେ ହୋଇଥାଏ ୧୭ ବର୍ଷ ।

ଜମିବାଡ଼ି ଦେଖାଶୁଣା କରିବା ଭାର ଆଇଜାକ୍‌ଙ୍କୁ ଦେଇ ମା' ଭାବିଲେ ସେ ଏଥରକ ନିଶ୍ଚିନ୍ତ ହେଲେ; କିନ୍ତୁ ବିଧାତାଙ୍କ ମନ

ପରେ ଦେଖାଗଲା ଘର କାମରେ ଆଇଜାକ୍‌ଙ୍କ ମନ ମୋଟେ ଲାଗୁନ । ମା' ସେଥିନେଇ ପୁଣି ଚିନ୍ତିତ ହୋଇ ପଡ଼ିଲେ ।

ଇଂଲଣ୍ଡରେ 'କାଉପୋ' ନାମକ ଜଣେ ବିଖ୍ୟାତ ଶିଳ୍ପୀ ଥିଲେ । ସେ ପିଲାଦିନେ ମେଣ୍ଢା ଚରାଉଥିଲେ; କିନ୍ତୁ ମେଣ୍ଢା ଚରାଇବାକୁ ସେ ମୋଟେ ପସନ୍ଦ କରୁ ନଥିଲେ । ଏଣୁ ସେ କାଗଜ ପେନ୍‌ସିଲ୍ ଧରି କେବଳ ମେଣ୍ଢା ଛବି ଆଙ୍କୁଥାନ୍ତି । ଏଇପରି ଆଙ୍କୁ ଆଙ୍କୁ ଦିନେ ସେ ପୃଥିବୀରେ ଶ୍ରେଷ୍ଠ ଶିଳ୍ପୀ ହୋଇ ପାରିଥିଲେ ।

ସେଇପରି ବାଳକ ନିଉଟନଙ୍କୁ ପାଠପଢ଼ା ଜଣା ଲାଗିଥାଏ—ତାଙ୍କର ଘରଧନ୍ଦା ବୁଝିବାରେ ମନ ଲାଗିବ ବା କିମିତି ? ପାଠ-ପଢ଼ା ପରି ତାଙ୍କର ଆଉ ଏକ ଝୁଙ୍କ୍ ମଧ୍ୟ ଥାଏ । ପଢ଼ାପଢ଼ି ସାରି ବେଳେବେଳେ ନାନା ପ୍ରକାର ଯନ୍ତ୍ରପାତି, ଖେଳନା ତିଆରି କରିବାକୁ ସେ ଲାଗିଯାନ୍ତି । ପ୍ରତି ଶନିବାର ଦିନ ଘର୍ଦ୍ଦି ବିକ୍ରୀ ପାଇଁ ବଜାରକୁ ଆସିବାକୁ ହୁଏ ତାଙ୍କୁ । ସାଙ୍ଗରେ ଜଣେ ଚାକର ଆସେ, ଅଥଚ କିନ୍ତୁ ଚାକରକୁ ବଜାର ସଉଦା ଧରାଇ ଦେଇ ଘୋଡ଼ାରେ ଚଢ଼ି ସିଧା ଚାଲି ଆସନ୍ତି ମା'ଙ୍କ ବନ୍ଧୁ କ୍ଲାର୍କଙ୍କ ଘରକୁ । ସେଠି ଦେହଞ୍ଜି ଲାଗିଯାନ୍ତି ବହି ପଢ଼ାରେ ।

ପଢ଼ାପଢ଼ି ପାଇଁ ଏଇଟି ଛଡ଼ା ଆଉ ଗୋଟିଏ ଜାଗା ମଧ୍ୟ ଥାଏ ତାଙ୍କର । ଗ୍ରାଣ୍ଟହାମ ସହର ସୀମାରେ ଥାଏ ଗୋଟିଏ ଛୋଟ ପାହାଡ଼—ପାହାଡ଼ ପାଦ ତଳେ ଥାଏ ନାନାପ୍ରକାର ଗଛ । ସେଇ ନିରେଦ ଗଛ ଛାଇତଳେ ବସି ନିଉଟନ ତନ୍ମୟ ହୋଇ ବହି ପଢ଼ନ୍ତି । ଘଣ୍ଟା ପରେ ଘଣ୍ଟା ଏମିତି କଟିଯାଏ ।

ଘରେ ମଧ୍ୟ ଗୋଟିଏ ଶ୍ରେଷ୍ଠ କୋଠରୀ ସେ ବାଛି ନେଇ ଥାନ୍ତି ପଢ଼ାପଢ଼ି କରିବା ପାଇଁ । ନିଜ ହାତରେ ଥାକ ତିଆରି କରି ବହିଗୁଡ଼ିକ ଯତ୍ନ ସହକାରେ ସଜାଇ ରଖନ୍ତି । ବହି ବ୍ୟତୀତ ଛୁରୀ, ବଟାଳି, କରତ, ମାର୍ବୁଲ, କଣ୍ଟା, ପିଚ୍‌ବୋର୍ଡ଼, ଟିଣ, କାଠ ଇତ୍ୟାଦି ଅନେକ ଦରକାରୀ ଜିନିଷ ଥାଏ । ସେଇଟି ଏକ ପ୍ରକାର ନିଉଟନଙ୍କର ଶ୍ରେଷ୍ଠ ଗବେଷଣାଗାର ହୋଇଥାଏ ।

ସେ ପିଲାଦିନୁ ଏକୁଟିଆ ରହିବାକୁ ଭଲପାଉଥିଲେ । ଏହା ତାଙ୍କର ଏତେ ଅଭ୍ୟାସ ହୋଇଥାଏ ଯେ, ସାଙ୍ଗ ପିଲାଏ ଖୁସିରେ ଖେଳିବାକୁ ଡାକିଲେ ବି ସେ ଯାଆନ୍ତି ନାହିଁ । ସେଇ ଖେଳ ସମୟରେ ସେ ନ ଖେଳି ବଟାଳି, ମାର୍ବୁଲ ଧରି କିଛି ନା କିଛି ଜିନିଷ ତିଆରି କରିବାକୁ ଲାଗିଯାନ୍ତି ।

ମା’ ବଡ଼ ଚିନ୍ତାରେ ପଡ଼ିଲେ । ଏପରି ପିଲାକୁ ନେଇ ସେ ସଂସାର ଚଳେଇବେ ବା କେମିତି ! ମା’ ଯେତେବେଳେ ଆଇଜାକ୍‌କୁ ନେଇ ମହାସମସ୍ୟାରେ ପଡ଼ିଥାଆନ୍ତି, କିଙ୍ଗସ୍ ସ୍କୁଲର ହେଡ଼ମାଷ୍ଟର ଆସି ମା’ଙ୍କୁ କହିଲେ, ‘ଆପଣ ଆଇଜାକ୍‌ଙ୍କର ପଢ଼ା ବନ୍ଦ କରାଇ ବଡ଼ ଭୁଲ କଲେ । ତାର ଯାହା ପ୍ରତିଭା ଅଛି, ଏତେ କମ ବୟସରେ ସାଧାରଣତଃ ଅନ୍ୟ ପିଲାଙ୍କଠି ଦେଖାଯାଏନା । ତାକୁ ପୁଣି ସ୍କୁଲକୁ ପଠାନ୍ତୁ ।’

ଜମିଦାରୀର ଆୟ ସେତେବେଳକୁ ଖୁବ୍ କମି ଯାଇଥାଏ । ପୁଣି ସହର-ସ୍କୁଲରେ ପଢ଼ାଇବା ମଧ୍ୟ ଖର୍ଚ୍ଚ ବହୁଳ । ସେ ଇତସ୍ତତଃ ହେବାରୁ ହେଡ଼ମାଷ୍ଟର ଆଇଜାକ୍‌ଙ୍କର ସ୍କୁଲ ଦରମା ଛାଡ଼ କରିଦେବାକୁ ପ୍ରତିଶ୍ରୁତି ଦେଇ ଚାଲିଗଲେ । ଆଇଜାକ୍‌ଙ୍କର

ପଢ଼ାପଢ଼ି ପ୍ରତି ମଧ୍ୟ ସ୍ୱାଭାବିକ ଝୁଙ୍କ୍ ଥିବା ଦେଖି ମା' ପୁଣି ପଠାଇଲେ ସ୍କୁଲ୍‌କୁ । ଆଇଜାକ୍ ସହରରେ ସେଇ ମି: କ୍ଲାର୍କଙ୍କ ଘରେ ରହି ପଢ଼ିବାକୁ ଲାଗିଲେ ।

ମି: କ୍ଲାର୍କଙ୍କ ଘରେ ରହି ସେ ପଢ଼ୁଥାନ୍ତି । ତା ସାଙ୍ଗେ ସାଙ୍ଗେ ଯନ୍ତ୍ରପାତି ମଧ୍ୟ ତିଆରି କରୁଥାନ୍ତି । ମି: କ୍ଲାର୍କ ସେ କାମରେ ତାଙ୍କୁ ନିରୁତ୍ସାହିତ ନ କରି ବରଂ ଉତ୍ସାହିତ କରନ୍ତି । ବେଳେବେଳେ ସେ ପାଠ ପଢ଼ାରେ ଶ୍ରେଣୀର ପିଲାମାନଙ୍କ ପଛରେ ପଡ଼ି ଯାଆନ୍ତି । ଏପରିକି ତଥି ପିଲାମାନେ ମଧ୍ୟ ଅନେକ ସମୟରେ ତାଙ୍କୁ ଟପି ଚାଲି ଯାଆନ୍ତି । ନିଉଟନ ମନେମନେ ଲଜ୍ଜାପାଇ ଜୋରରେ ପଢ଼ାପଢ଼ି ଆରମ୍ଭ କରିଦିଅନ୍ତି । ପୁଣି ସେ ଶ୍ରେଣୀରେ ପୂର୍ବ ସ୍ଥାନ ଫେରି ପାଆନ୍ତି ।

ଆଜକାଲି କାରଖାନାସବୁ ବାଷ୍ପ ଓ ବିଦ୍ୟୁତ୍ ଦ୍ୱାରା ଚାଲୁଛି । ସେତେବେଳେ ବିଜ୍ଞାନର ଏତେ ଉନ୍ନତି ହୋଇ ନ ଥିବାରୁ କଳଗୁଡ଼ିକ ପବନ ଓ ଜଳସ୍ରୋତଦ୍ୱାରା ଚାଲୁଥିଲା । ଗ୍ରାଣ୍ଡହ୍ୟାମ୍ ସହରରେ ଯେଉଁସବୁ କଳ ଥିଲା ସେଗୁଡ଼ିକ ମଧ୍ୟ ଜଳସ୍ରୋତ ଦ୍ୱାରା ଚାଲୁଥିଲା । ଏଇ ସମୟରେ ଗୋଟିଏ ନୂଆ କଳ ସହରକୁ ଆସିଲା ଏବଂ ସେଇଟି ପବନ ଦ୍ୱାରା ଚାଲିଲା । ବହୁତ ଲୋକ ରୁଣ୍ଡ ହେଲେ ସେ କଳକୁ ଦେଖିବା ପାଇଁ । ନିଉଟନ ମଧ୍ୟ ଗଲେ । ସମସ୍ତେ ଦେଖି ଚାଲି ଆସନ୍ତି; ନିଉଟନ କିନ୍ତୁ ଅନେକ ବେଳ ଯାଏଁ ରହି କଳର ସବୁ ଅଙ୍ଗକୁ ନିରେଖି ଦେଖନ୍ତି । ଦିନେ ଦେଖାଗଲା ସେଇ କଳ ଅନୁକରଣରେ ଅବିକଳ ଗୋଟିଏ ଖେଳନା-କଳ ସେ ତିଆରି କରିଛନ୍ତି । ସମସ୍ତେ ନିଉଟନଙ୍କ କାରିଗରି ଦେଖି ଅବାକ ହୋଇଗଲେ ।

ଏହାପରେ ସେ କାଠରେ ଗୋଟିଏ ପାଣି ଘଡ଼ି ତିଆରି କଲେ । ସେ ଖେଳନା କଳଟି ଭଳି ଏଇଟି ମଧ୍ୟ ସମସ୍ତଙ୍କୁ ବିସ୍ମୟାଭିଭୂତ କଲା । ଘଡ଼ି ଭିତରେ ତିଆରି ହୋଇଥିବା ଗୋଟିଏ ଛିଦ୍ର ଦେଇ ଜଳବିନ୍ଦୁ ପଡ଼େ । ଫଳରେ କାଠ ତିଆରି କଣ୍ଟା ଦୁଇଟି ଆପେ ଆପେ ବୁଲିବାକୁ ଲାଗେ । ସେଇଥିରୁ ସମୟ କେତେ ନିଉଟନ୍ ଜାଣି ପାରନ୍ତି ଏବଂ ନିଜର ସବୁ କାମ ସେଇ ଘଣ୍ଟା ସମୟ ଅନୁସାରେ କରନ୍ତି ।

ଶୀତ ଦିନ ସକାଳେ ଖୁବ କୁହୁଡ଼ି ପଡ଼େ । ଫଳରେ ସବୁ ଆଡ଼ ଅନ୍ଧାରୁଆ ହୋଇଯାଏ । ନିଉଟନ ପ୍ରଥମେ ଲଣ୍ଠନ ନେଇ ସ୍କୁଲକୁ ଯିବା ଆସିବା କରୁଥିଲେ । ପରେ ନିଜ ହାତରେ ଗୋଟିଏ କାଗଜ ଲଣ୍ଠନ ତିଆରି କରି ସ୍କୁଲକୁ ଯିବା ଆସିବା କଲେ । ବେଳେବେଳେ ଖୁବ୍ ରାତିରେ ସେ ଗୁଡ଼ି ଭିତରେ ଏଇ ପ୍ରକାର ଲଣ୍ଠନ ରଖି ଆକାଶରେ ଉଡ଼ାଇ ଦିଅନ୍ତି । ଆକାଶରେ ଅଦ୍ଭୁତ ଆଲୁଅ ଦେଖି ଲୋକମାନେ ଭୟ ପାଆନ୍ତି । କେତେକେ ତାକୁ ଧୂମକେତୁ ବୋଲି ମଧ୍ୟ ଭାବନ୍ତି । ଆଜିକାଲି ପ୍ରାୟ ଅନେକ ପିଲା ଏଇପ୍ରକାର ରାତି ଜାଳି ଗୁଡ଼ି ଉଡ଼ାଇ ଥାଆନ୍ତି । ଆଜିଠୁ ପ୍ରାୟ ତିନି ଶହ ବର୍ଷ ପୂର୍ବେ ଏକଥା କେହି ଚିନ୍ତା ବି କରିପାରୁ ନ ଥିଲେ; କିନ୍ତୁ ବାଳକ ନିଉଟନ୍ ଏ ସବୁ ଭାବିବା ସାଙ୍ଗେ ସାଙ୍ଗେ କାର୍ଯ୍ୟରେ ପରିଣତ କରି ପାରୁଥିଲେ ।

ପିଲାଦିନରୁ ଆଉ ଏକ ଅଭ୍ୟାସ ମଧ୍ୟ ନିଉଟନଙ୍କର ଥିଲା । ତାହା ହେଉଛି ସୂର୍ଯ୍ୟଙ୍କ ଗତି ବିଧି ଲକ୍ଷ୍ୟ କରିବା । ସେ ରହୁଥିବା ଘର କାନ୍ଥ, ଦୁଆର ଓ ପିଣ୍ଡାରେ ଖଡ଼ିରେ ଚିହ୍ନ ରଖୁଥିଲେ ।

ପତ୍ରର ସେଗୁଡ଼ିକୁ ଭଲ ଭାବରେ ଦେଖି ମନେ ମନେ ହିସାବ କରୁଥିଲେ ।

ସେ ଯେତେବେଳେ ଯାହା ଭାବନ୍ତି ହେଥିରେ ଏକବାର ତନ୍ମୟ ହୋଇଯାଆନ୍ତି । ଥରେ ଏଇପରି ଗୋଟିଏ ଘଟଣା ଘଟିଥିଲା । ଗ୍ରାଣ୍ଟହ୍ୟାମ୍ ସହର ପାଖରେ ଥିବା ପାହାଡ଼ ଉପର ଦେଇ ସେ ଚାଲି ଯିବାକୁ ଭାବିଲେ । ତାପରେ ଘୋଡ଼ା ପିଠିରୁ ଓହ୍ଲାଇ ପଡ଼ି ଘୋଡ଼ା ଲଗାମଟି ଧରି ପାହାଡ଼ ଉଠିବାକୁ ଲାଗିଲେ । ପାହାଡ଼ ସେ ପାଖେ ପହଞ୍ଚି ପୁଣି ଯେତେବେଳେ ଘୋଡ଼ାରେ ଚଢ଼ିବାକୁ ଯାଆନ୍ତି, ଦେଖିଲେ ହାତରେ କେବଳ ଘୋଡ଼ାର ଲଗାମଟି ରହିଛି, ଘୋଡ଼ା ନାହିଁ । ଘୋଡ଼ା ଯେ କେତେବେଳୁ ଲଗାମରୁ ଖସି ଯାଇଛି ତାହା ତାଙ୍କୁ ଜଣା ନାହିଁ । ତନ୍ମାରେ ତନ୍ମୟ ରହି କେବଳ ଲଗାମଟି ଧରି ସେ ଏତେବାଟ ଚାଲି ଆସିଛନ୍ତି ।

ଏଇ ତନ୍ମୟ ଭାବଟି ତାଙ୍କର ବଡ଼ ହେବା ପର୍ଯ୍ୟନ୍ତ ବି ରହିଥିଲା । ଥରେ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ତାଙ୍କୁ ଦେଖା କରିବାକୁ ଘରକୁ ଆସିଥିଲେ । ନିଉଟନ ସେତେବେଳେ ବାହାରକୁ ଯାଇଥାନ୍ତି । ଟେବୁଲ ଉପରେ ତାଙ୍କର ଖାଇବା ଜିନିଷ ଘୋଡ଼ା ହୋଇ ରଖା ଯାଇଥାଏ । ଅନେକ ବେଳୁ ବନ୍ଧୁ ଆସି ଅପେକ୍ଷା କରି ବସିଥାନ୍ତି । ଭୋକ ବି ଲାଗିଲାଣି । ବେଶି ଭୋକ ଲାଗିବାରୁ ସେ ଖାଦ୍ୟତକ ଖାଇଦେଇ ଥାଳିଆ ଘୋଡ଼ାଇ ଆଗପରି ରଖି-ଦେଲେ । କିଛି ସମୟ ପରେ ନିଉଟନ ଆସି ପହଞ୍ଚିଲେ । ବନ୍ଧୁଙ୍କ ସହିତ କଥାବାର୍ତ୍ତା ହେଉ ହେଉ ଥାଳିଆ କାଢ଼ି ଦେଖିଲେ ଥାଳିରେ କିଛି ନାହିଁ । ନିଜେ ଖାଇଛନ୍ତି କି ନାହିଁ ସେ କଥା ତାଙ୍କର

ମୋଟେ ମନେ ନାହିଁ । ସାଙ୍ଗେ ସାଙ୍ଗେ ବନ୍ଧୁଙ୍କୁ କହିଲେ, 'କେତେ-ବେଳୁ ଖାଇ ସାରିଛି ମୋର ମନେ ନାହିଁ—ପୁଣି, ଖାଇବାକୁ ଯାଉଛି । ବାଃରେ ମୋ ମନ !'

ପିଲାଦିନେ ସନ୍ଧ୍ୟାପତ୍ର ତିଆରି ସଙ୍ଗେ ସଙ୍ଗେ ଛବି ବି ଆଙ୍କୁଥିଲେ ନିଉଟନ । ସେଥିମଧ୍ୟରୁ କେତେକ ଛବି ନିଜ ତିଆରି ଫ୍ରେମରେ ବାନ୍ଧି ସାଇତି ରଖୁଥିଲେ । ପିଲାବେଳେ ସେ କେବେ କେମିତି କବିତା ମଧ୍ୟ ଲେଖୁଥିଲେ । ତେବେ ବଡ଼ ହେବା ପରେ କବିତା ପ୍ରତି ତାଙ୍କର ସେତେ ଆଗ୍ରହ ନ ଥିଲା ।

ସେ କିଂସ୍ ସ୍କୁଲରେ ବର୍ଷେ ପଢ଼ି କେମ୍ବ୍ରିଜ୍ ଗଲେ । ସେଠାରେ ସେ ଟ୍ରିନିଟି କଲେଜରେ ନାମ ଲେଖାଇଲେ ।

ଟ୍ରିନିଟି କଲେଜରେ ଭର୍ତ୍ତି ହେବା ପରେ ସେ ପାଠପଢ଼ାରେ ଖୁବ୍ ମନ ଦେଲେ; କିନ୍ତୁ ପ୍ରଥମେ ପ୍ରଥମେ ତାଙ୍କୁ କେତେକ ଅସୁବିଧା ଭିତର ଦେଇ ଯିବାକୁ ହେଲା । ତାଙ୍କର ସ୍ୱଭାବ ଥିଲା ଲାଜକୁଳା ଧରଣର । ସେଥିପାଇଁ ସାଙ୍ଗ ପିଲାଙ୍କ ସହିତ ମିଳିମିଶି ପାରୁ ନ ଥିଲେ । ସହଜେ ସେ ଖେଳାଖେଳି ପସନ୍ଦ କରୁ ନ ଥିଲେ । ଏଣୁ ପିଲାମାନଙ୍କ ଉଚ୍ଛୃଙ୍ଖଳତା ତାଙ୍କ ପକ୍ଷେ ଅସହ୍ୟ ହେଉଥିଲା । ସହପାଠୀମାନଙ୍କ ସହିତ ନ ମିଶି ପାରିବାର ଆଉ ଏକ କାରଣ ମଧ୍ୟ ଥାଏ । ସେ ଘରୁ ମା'ଙ୍କ ପାଖରୁ ଯେଉଁ ଟଙ୍କା ପାଆନ୍ତି ସେଥିରେ କଲେଜର ସମୁଦାୟ ପଢ଼ା ଖର୍ଚ୍ଚ ଅଣ୍ଟେନାହିଁ । ଏଣୁ କିଛି ସମୟ ତାଙ୍କୁ କଲେଜରେ ଗୃହକର କାମ କରିବାକୁ

ହୁଏ । ସେଥିପାଇଁ ବଡ଼ଲୋକଙ୍କ ପିଲାମାନେ ନାକ ଟେକନ୍ତି; କିନ୍ତୁ ନଉଟନ ସେ ସବୁକୁ ମୋଟେ ଖାତିରକୁ ଆଣନ୍ତି ନାହିଁ । ନିଜ ଶକ୍ତି ଉପରେ ତାଙ୍କର ଥାଏ ଅଟଳ ବିଶ୍ୱାସ । କିନ୍ତୁ ଶେଷରେ ପିଲାମାନଙ୍କର ଦୁଷ୍ଟାମି ଏତେ ବେଶି ହେଲା ଯେ ଶେଷକୁ ସେ ବାଧ୍ୟ ହୋଇ ଜାଗା ବଦଳ କରି ଅନ୍ୟ ଏକ ଘରକୁ ଚାଲି ଆସିଲେ । ସେଠାରେ ଆଉଜଣେ ମନମୁତାବକ ସାଥୀ ପାଇ ଜୋରସୋରରେ ପଢ଼ାପଢ଼ି ଆରମ୍ଭ କରିଦେଲେ । ନଉଟନଙ୍କ ଅଧ୍ୟବସାୟ ଦେଖି ଅଧ୍ୟାପକମାନଙ୍କ ଦୃଷ୍ଟି ପଡ଼ିଲା ନଉଟନଙ୍କ ଉପରେ । ତରୁଣ ଛାତ୍ରଟିର ଅସାଧାରଣ ବୁଦ୍ଧି ଦେଖି ଅଧ୍ୟାପକମାନେ ଆଶ୍ଚର୍ଯ୍ୟ ହେଲେ । ଆସ୍ତେ ଆସ୍ତେ ସେମାନଙ୍କ ସହିତ ନଉଟନଙ୍କ ବନ୍ଧୁତା ମଧ୍ୟ ହେଲା ।

କଲେଜରେ ପଢ଼ିବା ପାଇଁ କେମ୍ବ୍ରିଜ ଆସିବାବେଳେ ନଉଟନଙ୍କ ମାମୁଁ ତାଙ୍କୁ ଖଣ୍ଡିଏ 'ତର୍କ ଶାସ୍ତ୍ର' ବହି ଦେଇଥିଲେ । ସେଇଟି ସେ ବିନା କାହାରି ସାହାଯ୍ୟରେ ପଢ଼ି ସାରିଥିଲେ । କଲେଜ ଆସି ଦେଖିଲେ ସେଇ ଏକା ବିଷୟ ପଢ଼ା ହେଉଛି । ତେଣୁ ପଢ଼ାରେ ତାଙ୍କୁ କିଛି ଅସୁବିଧା ହେଲାନାହିଁ । ଅଧ୍ୟାପକମାନେ ପ୍ରଥମେ ଅବାକ୍ ହେଲେ ଛାତ୍ରଟିର ଅସାଧାରଣ ପାଣ୍ଡିତ୍ୟ ଦେଖି । ତାପରେ ସେମାନେ ନଉଟନଙ୍କୁ ଦୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ଖଣ୍ଡିଏ ବହି ଦେଲେ । ସେଇଟିକୁ ମଧ୍ୟ ବିନା ଶିକ୍ଷକ ସାହାଯ୍ୟରେ ସେ ଆୟତ୍ତ କରିନେଲେ । ଏ ବିଷୟ ନେଇ ଅଧ୍ୟାପକ ମହଲରେ ଚହଳ ଖେଳିଗଲା । ସେ କେଇଦିନ ନଉଟନହିଁ କଲେଜର ଛାତ୍ର ଓ ଅଧ୍ୟାପକମାନଙ୍କ ଚର୍ଚ୍ଚାର ବିଷୟ ହୋଇ ଉଠିଲେ ।

ସେତେବେଳେ ଡଃ ଆଇଜାକ୍ ବ୍ୟାରୋ ନାମକ ଜଣେ ଅଧ୍ୟାପକ ଥାନ୍ତି । ସେ ଅଙ୍କଶାସ୍ତ୍ରରେ ଖୁବ୍ ପଣ୍ଡିତ । ସେତେବେଳେ ବୈଜ୍ଞାନିକ ଭାବରେ ମଧ୍ୟ ତାଙ୍କର ଖୁବ୍ ଖ୍ୟାତିଥିଲା । ଅଙ୍କ ଶାସ୍ତ୍ରରେ ନିଉଟନଙ୍କ ଦକ୍ଷତା ଦେଖି ସେ ଖୁବ୍ ପ୍ରଶଂସା କଲେ ଏବଂ ନିଉଟନଙ୍କ ପଢ଼ାପଢ଼ିରେ ମଧ୍ୟ ଖୁବ ସାହାଯ୍ୟ କଲେ ।

୧୬୬୪ ମସିହାରେ ନିଉଟନ ବି. ଏ. ପାଶକଲେ । ସେତେବେଳେ ତାଙ୍କୁ ୨୨ ବର୍ଷ ହୋଇଥାଏ । ପରବର୍ତ୍ତୀ ଦୁଇଟି ବର୍ଷ ତାଙ୍କର ଖୁବ କାର୍ଯ୍ୟବ୍ୟସ୍ତତା ଭିତରେ କଟିଲା । ଯାହା କିଛି ବୈଜ୍ଞାନିକ ଆବିଷ୍କାରମାନ ସେ ପରେ କରିଥିଲେ ସେ ସବୁର କଳ୍ପନା-ବୀଜ ଏଇ ସମୟ ଭିତରେ ହିଁ ତାଙ୍କ ମନ ଭିତରେ ବପନ ହୋଇଥିଲା ।

କଲେଜ ପଢ଼ା ଶେଷ ହେବାରୁ ସେ ସହରରୁ ନିଜ ଗାଁକୁ ଚାଲି ଆସିଲେ । କେବେ କେମିତି ଦରକାର ପଡ଼ିଲେ ସେ ସହରକୁ ଯାଆନ୍ତି । ତେବେ ଅଧିକାଂଶ ସମୟ ତାଙ୍କର ଗାଁରେ ହିଁ କଟିଲା । ଏତିକିବେଳେ ତିନୋଟି 'ବୈଜ୍ଞାନିକ ସତ୍ୟ'ର ସେ ସନ୍ଧାନ ପାଆନ୍ତି, ଯାହାକି ପରବର୍ତ୍ତୀ କେଇଟି ବର୍ଷପରେ ବିଜ୍ଞାନ ଜଗତରେ ବିପ୍ଳବ ସୃଷ୍ଟି କରିଥିଲା ।

ପ୍ରଥମଟି ହେଲା ଅଙ୍କଶାସ୍ତ୍ରର 'ଫ୍ଲାକ୍‌ସିଅନ' (କାଲକ୍ୟୁଲସ) ରୀତି । ଏଇ ରୀତିକୁ ମୂଳଦୁଆ କରି ସମସ୍ତ ଆଧୁନିକ ଅଙ୍କଶାସ୍ତ୍ର ଛିଡ଼ା ହୋଇଛି । ପଦାର୍ଥବିଦ୍ୟାର ସମସ୍ତ ସମସ୍ୟାର ସମାଧାନ ହେଉଛି କେବଳ ଏଇ ରୀତି ସାହାଯ୍ୟରେ ।

ଦ୍ୱିତୀୟଟି : ଆଲୋକ ଗଠନର ମୂଳମନ୍ତ୍ର ।

ତୃତୀୟଟି : ତାଙ୍କର ବିଖ୍ୟାତ ଆବିଷ୍କାର ସର୍ବବ୍ୟାପୀ ମାଧ୍ୟାକର୍ଷଣ ଶକ୍ତିର ମୂଳମନ୍ତ୍ର ।

ଏ ସବୁକୁ ଠିକନିଖି ପରୀକ୍ଷାକରି ପ୍ରମାଣ କରିବାକୁ ତାଙ୍କୁ ଅବଶ୍ୟ ବହୁତ ଦିନ ଲାଗିଥିଲା ।

୧୬୬୭ ଖ୍ରୀଷ୍ଟାବ୍ଦରେ ଟ୍ରିନିଟି କଲେଜର 'ଫେଲୋ' ନିର୍ବାଚନ ହେଲା । ଜାଗା ଖାଲି ହେବାରୁ 'ମାଇନର ଫେଲୋ' ଭାବରେ ନିଉଟନଙ୍କୁ ନିର୍ବାଚିତ କରାଗଲା । ତାଙ୍କର କାର୍ଯ୍ୟଦକ୍ଷତା ଯୋଗୁ ମାତ୍ର କେଇଟିମାସ ପରେ 'ସିନିଅର ଫେଲୋ' ପଦକୁ ସେ ଉଠିଲେ । ଏଇବର୍ଷ ସେ ଏମ. ଏ. ମଧ୍ୟ ପାଶ କଲେ । ସାତ ଆଠବର୍ଷ ଭିତରେ କଲେଜର ସଦସ୍ୟ ପଦକୁ ମଧ୍ୟ ସେ ଉନ୍ନୀତ ହେଲେ । ଏ ପଦଟି ପାଇବା ପରେ ସମ୍ମାନ ଓ ଅର୍ଥ ଦୁଇଦିଗରୁ ସେ ହେଲେ ଲାଭବାନ ।

ନିଉଟନ୍‌ଙ୍କ ଶୁଭାକାଂକ୍ଷୀ ଉକ୍ତର ଅଧ୍ୟାପକ ବ୍ୟାରୋ ଥରେ ଅଙ୍କଶାସ୍ତ୍ର ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ଲେଖିବାକୁ ତାଙ୍କୁ କହିଲେ । ନିଉଟନ ପ୍ରବନ୍ଧଟି ଲେଖି ଯଥାସମୟରେ ତାଙ୍କୁ ଦେଲେ ଏବଂ ନିଜ ନାମ ଗୋପନ ରଖିବାକୁ ତାଙ୍କୁ ଅନୁରୋଧ କଲେ । କିନ୍ତୁ ପ୍ରବନ୍ଧଟି ଏତେ ଉଚ୍ଚସ୍ତରର ହେଲା ଯେ ପ୍ରବନ୍ଧ ଲେଖକଙ୍କ ନାମ ପ୍ରକାଶ ନକରି ଅଧ୍ୟାପକ ବ୍ୟାରୋ ରହି ପାରିଲେ ନାହିଁ । ତାପରେ ସମସ୍ତେ ଜାଣିଲେ ନିଉଟନ କେବଳ ପଣ୍ଡିତ ନୁହନ୍ତି, ସେ ଗୋଟିଏ ଅସାଧାରଣ ପ୍ରତିଭା ମଧ୍ୟ ।

ସେତେବେଳେ ଉକ୍ତ କଲେଜରେ ଅଙ୍କଶାସ୍ତ୍ରର ସର୍ବଶ୍ରେଷ୍ଠ ପଦରେ ନିଯୁକ୍ତ ଥାଆନ୍ତି ଅଧ୍ୟାପକ ବ୍ୟାରୋ । ସେ ସ୍ୱେଚ୍ଛାରେ ସେଇ ପଦଟି ନିଉଟନଙ୍କୁ ଛାଡ଼ି ଦେଲେ । ୧୬୬୯ ଖ୍ରୀ. ରେ ନିଉଟନ ସେ ପଦରେ ନିଯୁକ୍ତ ହେଲେ । ସେତେବେଳେ ତାଙ୍କୁ ହୋଇଥାଏ ମୋଟେ ୨୭ ବର୍ଷ । ନିଉଟନ ଟ୍ରିନିଟି କଲେଜରେ ଅଙ୍କଶାସ୍ତ୍ରର ଅଧ୍ୟାପକ ନିଯୁକ୍ତ ହେବା ଫଳରେ ତାଙ୍କର ଅଭାବ କଷ୍ଟ ଦୂରୀଭୂତ ହେଲା । ଆଉ ସବୁ ବିଦ୍ୟା ଅପେକ୍ଷା ଅଙ୍କଶାସ୍ତ୍ରକୁ ସେ ଖୁବ୍ ଭଲ ପାଉଥିଲେ । ଅଙ୍କଶାସ୍ତ୍ରର ଉନ୍ନତି ନ ହେଲେ ବିଜ୍ଞାନର ଯେ ଉନ୍ନତି ଅସମ୍ଭବ ଏ କଥା ସେ ଅନୁଭବ କରିଥିଲେ । ସେଥିପାଇଁ ଅଙ୍କ-ଶାସ୍ତ୍ରର ଉନ୍ନତି ପାଇଁ ପ୍ରାଣମୂର୍ଚ୍ଛା ଚେଷ୍ଟା ଚଳାଇଥିଲେ ସେ ।

ଜ୍ୟୋତିର୍ବିଦ୍ୟା ପ୍ରତି ମଧ୍ୟ ତାଙ୍କର ଝୁଙ୍କ୍ ଥିଲା । ଗ୍ରହ ନକ୍ଷତ୍ରର ଗତି ବିଧି ଲକ୍ଷ୍ୟ କରିବା ପାଇଁ ସେ ଗୋଟିଏ ନୂଆଧରଣରେ ଦୂରବୀକ୍ଷଣ ଯନ୍ତ୍ର ବାହାର କରିଥିଲେ । ଏଇ ଦୂରବୀକ୍ଷଣ ଯନ୍ତ୍ରଟିକୁ ଆହୁରି ଟିକିଏ ଭଲ ଧରଣରେ କରିବାକୁ ପରୀକ୍ଷା କରୁ କରୁ ସେ ଆଲୋକ ଓ ତାର ବର୍ଣ୍ଣ ସମ୍ପର୍କରେ ଗୋଟିଏ ସମ୍ପୂର୍ଣ୍ଣ ମୌଳିକ ସତ୍ୟ ଆବିଷ୍କାର କଲେ । ତା ନାଁ ପ୍ରତିଫଳନଶୀଳ ଯନ୍ତ୍ର । ସେ ଏଥିରୁ ଗୋଟିଏ ଲଣ୍ଡନର ରୟେଲ ସୋସାଇଟିକୁ ଦେଇଥିଲେ । ସେତେବେଳେ ଏଇ ଦୂରବୀକ୍ଷଣ ଆବିଷ୍କାର ନେଇ ଚାରିଆଡ଼େ ଗୋଟାଏ ଚାଞ୍ଚଲ୍ୟ ଖେଳିଯାଇଥିଲା । ସେଇ ସମୟରେ ରୟେଲ ସୋସାଇଟିର କର୍ତ୍ତାମାନେ ନିଉଟନଙ୍କୁ ସୋସାଇଟିର ସଭ୍ୟ ରୂପେ ଗ୍ରହଣ କରିଥିଲେ ।

ନିଉଟନ ଯେ କେବଳ ପଦାର୍ଥ ବିଦ୍ୟା ଓ ଜ୍ୟୋତିର୍ବିଦ୍ୟା ସମ୍ବନ୍ଧରେ ଆଗ୍ରହୀ ଥିଲେ ତା ନୁହେଁ ରସାୟନ ଶାସ୍ତ୍ର ପ୍ରତି ମଧ୍ୟ

ସେ ଧ୍ୟାନ ଦେଉଥିଲେ । ତେବେ ରସାୟନ ଶାସ୍ତ୍ର ବିଷୟରେ ସେତେବେଳେ ଆଜକାଲିକା ପରି ମୋଟେ ଗବେଷଣା ହୋଇ-ନଥିଲା । ଯାଦୁବିଦ୍ୟା (କିମିଆ ବା ଆଲ୍‌କେମି) ଭିତରେ ସେତେ-ବେଳର ରସାୟନ ଶାସ୍ତ୍ର ଆତ୍ମଗୋପନ କରି ରହିଥିଲା । ନିଉଟନ କେବଳ ବୈଜ୍ଞାନିକ ସୂତ୍ର ନେଇ ମୁଣ୍ଡ ଖେଳେଇଥିଲେ; କିନ୍ତୁ ବିଶେଷ କିଛି ଫଳ ହୋଇନଥିଲା ସେଥିରେ ।

୧୬୭୫ ଖ୍ରୀଷ୍ଟାବ୍ଦ ଫେବୃୟାରି ୧୮ ତାରିଖରେ ରୟେଲ ସୋସାଇଟିର ଗୋଟିଏ ସଭା ହୋଇଥିଲା । ଏହି ସଭାରେ ନିଉଟନ ପ୍ରଥମ ଥର ପାଇଁ ଯୋଗ ଦେଇଥିଲେ । ସେ ବହୁ ଆଗରୁ ସୋସାଇଟିର ସଭ୍ୟ ଥିଲେହେଁ ତାଙ୍କର ଆଲୋକ ଓ ବର୍ଣ୍ଣ ସମ୍ବନ୍ଧୀୟ ସତ୍ୟତା ଉପରେ ରୟେଲ ସୋସାଇଟିରେ କେତେକ ବିରୁଦ୍ଧ ସମାଲୋଚନା ହେବାରୁ ସେ ସୋସାଇଟି ସଭ୍ୟ ପଦରୁ ଇସ୍ତଫା ଦେଇଥିଲେ; କିନ୍ତୁ ସୋସାଇଟି ତାଙ୍କ ଇସ୍ତଫା ଗ୍ରହଣ କରି-ନଥିଲା । ସୋସାଇଟିର ସଭାମାନଙ୍କରେ ନିଉଟନ ନିୟମିତ ଯିବା ଆସିବା କରିବାରୁ ସୋସାଇଟି ତାଙ୍କର ଆଲୋକ ସମ୍ବନ୍ଧୀୟ ସତ୍ୟଗୁଡ଼ିକ ମାନିନେଇଥିଲେ ।

ଏହାପରେ ନିଉଟନ ତାଙ୍କ ବିଦ୍ୟୁତ ଶକ୍ତି ଆବିଷ୍କାର ସମ୍ବନ୍ଧରେ କେତେକ ତଥ୍ୟ ସୋସାଇଟିକୁ ଜଣାଇଥିଲେ ।

ବିଦ୍ୟୁତ୍ ଶକ୍ତି ଉପରେ ସେ ଏଇପରି ଏକ ପରୀକ୍ଷା କରିଥିଲେ । କାଠ ଫ୍ରେମ ବନ୍ଧା ବାର ଇଞ୍ଚ ଚଉଡ଼ା ଓ ସୁଳକ ମୋଟା ଖଣ୍ଡିଏ

କାଚକୁ ଗୋଟିଏ ଟେବୁଲ ଉପରେ ରଖିବାକୁ ହୁଏ, ଯେପରି ଟେବୁଲ ଓ କାଚ ଭିତରେ ଏକ ଇଞ୍ଚର ୬ ଭାଗରୁ ମାତ୍ର ଭାଗେ ଫାଙ୍କ ଜାଗାରେ ଛୋଟ ଛୋଟ କାଗଜ ଗୁଣ୍ଡ ଭର୍ତ୍ତି କରି କାଚ ଉପରେ କନା ଦେଇ ଘଷିଲେ କାଚରୁ ବିଦ୍ୟୁତ୍ ଶକ୍ତି ବାହାରେ ଏବଂ କାଗଜ-ଗୁଡ଼ିକ ତଳ ଉପର ହୋଇ ନାଚିବାକୁ ଲାଗନ୍ତି । ନିଉଟନ କହନ୍ତି, ବିଦ୍ୟୁତ୍ ଶକ୍ତିସମ୍ପନ୍ନ କାଚ ଆଡ଼କୁ କାଗଜଗୁଡ଼ିକ ଟାଣି ହୋଇ ଆସେ । କିନ୍ତୁ ଉପରକୁ ଆସି କାଚରେ ବାଧା ପାଇବାରୁ ପୁଣି ଖସି-ପଡ଼େ । ଫଳରେ ବିକର୍ଷଣ ଘଟେ । ଏଇ ପରୀକ୍ଷାକୁ ସେ ଖୁବ୍ ଗୁରୁତ୍ୱ ଦେଉଥିଲେ । ବୈଦ୍ୟୁତିକ ଶକ୍ତିଯୋଗୁ ପୃଥିବୀର ସବୁ ଜିନିଷ ଏକାଠି ରହିପାରିଛି ବୋଲି ତାଙ୍କର ଧାରଣା । ସେତେବେଳେ ତାଙ୍କର ଏଇ ପରୀକ୍ଷାଟି କେତେକଙ୍କୁ ଅବାକ୍ କରିଥିଲା । ଆଜି ଜଣେ ସାହେବ ମଧ୍ୟ ଠିକ୍ ଏଇ ପ୍ରକାର ପରୀକ୍ଷା କରି ଏକା ଫଳ ପାଇଥିଲେ ।

ନିଉଟନ ଏଇସବୁ ଗବେଷଣା ଓ ପରୀକ୍ଷାରେ ବ୍ୟସ୍ତ ଥିଲାବେଳେ ଜର୍ମାନୀର ଜଣେ ବୈଜ୍ଞାନିକ ତାଙ୍କର ସବୁ କାମକୁ ଲକ୍ଷ୍ୟ କରୁଥାନ୍ତି । ସେ ନିଉଟନଙ୍କ ସମବୟସ୍କ । ନାଁ—ଲାଇବ୍‌ନିତସ୍ । ସେ ଦୁହେଁ ପରସ୍ପରକୁ ଆଗରୁ ଜାଣିଥିଲେ । ଦୁହେଁ ଯେତେବେଳେ ଯାହା ଗବେଷଣା କରୁଥିଲେ ଏବଂ ସେସବୁ ପରୀକ୍ଷାକରି କି ଫଳ ପାଉଥିଲେ ସେ ବିଷୟରେ ସେମାନେ ପରସ୍ପରକୁ ଜଣାଉଥିଲେ । କିନ୍ତୁ ଆଗେ ନିଉଟନ ଗଣିତଶାସ୍ତ୍ର ସମ୍ବନ୍ଧରେ ଯେଉଁ ନୂଆ ରୀତିଟି (ଫ୍ଲାକ୍‌ସିଅନ ବା କାଲକୁଲସ୍) ଆବିଷ୍କାର କରିଥିଲେ ସେ ସମ୍ବନ୍ଧରେ କାହାକୁ କିଛି ନକହି ଗୁପ୍ତ ରଖିଥିଲେ । ତେଣୁପାଇଁ ସେ ଏକ ସାଙ୍କେତିକ ଅକ୍ଷର ଓ ସାଙ୍କେତିକ ଚିହ୍ନ ବ୍ୟବହାର କରୁଥିଲେ । ତେଣେ ଲାଇ-ବ୍‌ନିତ୍ସ ଠିକ୍ ଏଇ ରକମର ରୀତିଟି ଆବିଷ୍କାର କରି ସାଙ୍ଗେ ସାଙ୍ଗେ

ବାହାର ଜଗତ ଆଗରେ ଥୋଇଦେଲେ । କିନ୍ତୁ ପ୍ରକୃତରେ ନିଉଟନ ଏଇ ଶକ୍ତିଟିର ଆବିଷ୍କର୍ତ୍ତା । ସେ ସେଇଟିକୁ ଗୋପନ ରଖିବାରୁ ଆବିଷ୍କାରର ଗୌରବ ନିଉଟନ ପରିବର୍ତ୍ତେ ଲାଇବ୍‌ନିତ୍‌ସ ହିଁ ପାଇଲେ । ବହୁଦିନ ଧରି ନାନା ବାଦବିବାଦ ଚାଲିଲାପରେ କେତେକ ବିଜ୍ଞଲୋକ ଏହାର ସମାଧାନ କରିଦେଇଥିଲେ ।

ଅନେକ ସମୟରେ ଦେଖାଯାଏ ବୈଜ୍ଞାନିକମାନେ ସାଧାରଣତଃ ଗୋଟିଏ ଗୋଟିଏ ବିଷୟ ଉପରେହିଁ ଗବେଷଣା କରିଥାନ୍ତି । ଯଥା, ପଦାର୍ଥ ବିଦ୍ୟା, ରସାୟନ, ଅଙ୍କ, ଜ୍ୟୋତିର୍ବିଦ୍ୟା ଇତ୍ୟାଦି । କିନ୍ତୁ ନିଉଟନ ପ୍ରାୟ ସବୁ ଶାସ୍ତ୍ରରେ ଉତ୍ସାହୀ ଥିଲେ । ସେସବୁ ବିଷୟରେ ସେ ଯେଉଁ ଗବେଷଣାମାନ କରିଥିଲେ ହୁଏତ କୌଣସି ଗୋଟିଏ ଗବେଷଣା ଯୋଗୁଁ ସେ ଅମର ହୋଇଥାନ୍ତେ; କିନ୍ତୁ ସେତିକରେ ସନ୍ତୁଷ୍ଟ ହେବା ଲୋକ ସେ ନଥିଲେ । ସବୁବେଳେ କୌଣସି ନା କୌଣସି କାମରେ ସେ ନିଜ ମୁଣ୍ଡକୁ ଲଗାଇଥାନ୍ତି । ଗୋଟିଏ ଜିନିଷ ତାଙ୍କୁ ସବୁବେଳେ ଚିନ୍ତାମଗ୍ନ କରି ରଖିଥାଏ । ତାହା ହେଉଛି ଆମେ ରହିଥିବା ଏଇ ପୃଥିବୀ କେଉଁ ମୂଳନୀତି ସାହାଯ୍ୟରେ ଚାଲିଛି । ବହୁଦିନର ଭାବନା ଓ ଚିନ୍ତାପରେ ସେ ଏଇ ନିୟମଟିକୁ ଆବିଷ୍କାର କରିଥିଲେ । ସେଇଟି ହେଲା ତାଙ୍କ ଜୀବନର ସର୍ବଶ୍ରେଷ୍ଠ ଆବିଷ୍କାର, ଯାହା ଯୋଗୁଁ ମଣିଷ ସମାଜରେ ସେ ଅମର ହୋଇ ରହିଛନ୍ତି ।

ନିଉଟନଙ୍କୁ ୨୩ କି ୨୪ ବର୍ଷ ବୟସ ହୋଇଥାଏ ଯେତେବେଳେ । ଲେଜରୁ ପଢ଼ା ଶେଷକରି ସେ ଗାଁକୁ ଆସିଥାନ୍ତି । ମୁଣ୍ଡ ଭିତରେ ନୂଆନୂଆ ଚିନ୍ତା କିଲ୍‌ବିଲ୍‌ ହେଉଥାଏ ସବୁବେଳେ ।

ଗ୍ରୀଷ୍ମଦିନ । ଉପରେ ବେଳା । ନିଉଟନ ନିଜ ବଗିଚାରେ ଗୋଟିଏ ଆତଗଛମୂଳେ ଚୁପ୍‌ଚାପ୍ ବସିରହିଥାନ୍ତି । ସେତିକିବେଳେ ତାଙ୍କ ଗୋଡ଼ ପାଖରେ ଗୋଟିଏ ପାଚିଲା ଆତ ଖସିପଡ଼ିଲା । ଏମିତି ଅନେକ ଆତ ଅନେକ ଥର ଗଛରୁ ପଡ଼ୁଛି । ତାହା ଅନେକ ଲୋକ ବି ଦେଖିଛନ୍ତି । ନିଉଟନ ବି ଯେ ନ ଦେଖିଛନ୍ତି ଏପରି ନୁହେଁ, ତେବେ ଏଥର ନିଉଟନଙ୍କ ମଥାଭିତରେ ଯେପରି ବିଦ୍ୟୁତ୍‌ର ତରଙ୍ଗ ଖେଳିଗଲା । ଗୋଟିଏ ସ୍ୱିଚ୍ ବୋତାମ ଟିପିବା ମାତ୍ରେ ଯେପରି ବଡ଼ ବଡ଼ କଳ କାରଖାନାର କଳଗୁଡ଼ିକ ଚାଲିବାକୁ ଆରମ୍ଭ କରେ, ସେହିପରି ଏ ସ୍ୱିଚ୍ ଆତଟି ପଡ଼ିବା ସାଙ୍ଗେ ସାଙ୍ଗେ ନିଉଟନଙ୍କ ମୁଣ୍ଡ ଭିତର କଳଗୁଡ଼ିକ ଚାଲୁ ହୋଇଗଲା ।

ନିଉଟନ ଖୁବ୍ ଗମ୍ଭୀର ଭାବରେ ଭାବିବାକୁ ଲାଗିଲେ··· ବୋଧହୁଏ ପୃଥିବୀର ଗୋଟିଏ ଅଦ୍ଭୁତ ଟାଣିବା ଶକ୍ତି ଅଛି । ଯାହାଫଳରେ ଆତଫଳ ଉପରୁ ଟାଣିହୋଇ ଆସି ମାଟି ଉପରେ ଖସିପଡ଼ିଲା । ଆଉ ପୃଥିବୀର ଏଇ ନିଜ ଆଡ଼କୁ ଟାଣିବା ଶକ୍ତି ଯେ କେବଳ ଗଛ ଅଗ ପର୍ଯ୍ୟନ୍ତ ଯାଇଛି, ତା ନୁହେଁ; ତା ଆହୁରି ଉପରକୁ ଯାଇଛି । ଏପରି କି ମେଘମାଳା ଓ ଶୂନ୍ୟଆକାଶ ଭେଦ କରି ଚାନ୍ଦ ପାଖକୁ ବି ଯାଇଛି ଏବଂ ସବୁଦିନ ପୃଥିବୀ ଚାନ୍ଦକୁ ନିଜ ଆଡ଼କୁ ଟାଣୁଛି । ନିଉଟନ ଭାବୁ ଭାବୁ ଏଇଠି ଅଟକିଗଲେ । ପୃଥିବୀ ଯଦି ଚାନ୍ଦକୁ ଟାଣୁଥାଏ, ତେବେ ଚାନ୍ଦଟା ଆତ ପରି ତଳେ ଖସି ପଡ଼ୁନି କାହିଁକି ? ସେ ପୁଣି ଭାବି ଠିକ୍ କଲେ···ଚାନ୍ଦର ହୁଏତ ନିଜର ଗତି ଅଛି ଏବଂ ସେ ସିଧାସଳଖ ଗତି କଲାବେଳେ ପୃଥିବୀ ତାକୁ

ଟାଣୁଥିବାରୁ ସେ ସିଧା ଯାଇ ନ ପାରି ଘୂରୁଛି— ଘୂରୁଛି ପୃଥିବୀ ଚାରିପାଖରେ ।

ଏହି ଗୋଟାଏ ନିୟମରେ ଗ୍ରହ-ନକ୍ଷତ୍ରାଦି ସମସ୍ତେ ପୃଥିବୀ ଚାରି ପାଖରେ ଘୂରୁଛନ୍ତି । ଏହା ସେ ଅଙ୍କ ସାହାଯ୍ୟରେ ପ୍ରମାଣ କରି-ଦେଲେ । ପୃଥିବୀର ଏହି ଟାଣିବା ଶକ୍ତିକୁ ସେ ନାଁ ଦେଲେ ମାଧ୍ୟା-କର୍ଷଣ ଶକ୍ତି ।

୧୬୮୦ ଖ୍ରୀଷ୍ଟାବ୍ଦରେ ଧୂମକେତୁର ଆବିର୍ଭାବ ହେଲା । ଗ୍ରହ ନକ୍ଷତ୍ର ପରି ଧୂମକେତୁଗୁଡ଼ିକ ମଧ୍ୟ ମାଧ୍ୟାକର୍ଷଣଶକ୍ତିର ଏହି ନିୟମକୁ ମାନି ଚଳନ୍ତି । ନିଉଟନଙ୍କ ଭକ୍ତ ବୈଜ୍ଞାନିକ ହାଲି ଏହି ନିୟମାନୁ-ସାରେ ଭବିଷ୍ୟତ ବାଣୀ ଶୁଣାଇ କହିଲେ ଯେ ୧୭୫୮ ଖ୍ରୀଷ୍ଟାବ୍ଦରେ ପୁଣି ଧୂମକେତୁ ଦେଖାଦେବ । ସତକୁ ସତ ସେହି ବର୍ଷ ଧୂମକେତୁ ଦେଖାଗଲା । ହାଲିଙ୍କ ଘୋଷଣା ସତ ପ୍ରମାଣିତ ହେବାରୁ ସେ ଧୂମକେତୁ-ର ନାମ ଦିଆଗଲା 'ହାଲି ଧୂମକେତୁ' ।

ନିଉଟନ ବଡ଼ ହୋଇଛନ୍ତି । ଚାରିଆଡ଼େ ତାଙ୍କର ଯଶ ଓ ଖ୍ୟାତି ମଧ୍ୟ ବଢ଼ିଯାଇଛି । ପିଲାଦିନେ ତାଙ୍କର କେହି ସାଙ୍ଗ ସାଥୀ ନଥିଲେ । କଲେଜରେ ପଢ଼ିବାବେଳେ ମଧ୍ୟ ସାଙ୍ଗ ସାଥୀ ବଢ଼ାଇବାକୁ ସେ ସୁଖ ପାଉ ନଥିଲେ । ସେ ରହୁଁଥିଲେ ସବୁବେଳେ ନୀରବରେ । କିନ୍ତୁ ସେ ବଡ଼ ହେବା ସାଙ୍ଗେ ସାଙ୍ଗେ ତାଙ୍କ ସାଙ୍ଗ ସାଥୀ ଓ ଭକ୍ତଙ୍କ ସଂଖ୍ୟା ମଧ୍ୟ ବଢ଼ିଚାଲିଲା; ତେବେ ବି ତାଙ୍କ ଭିତରେ ଟିକିଏ ହେଲେ

ପରିବର୍ତ୍ତନ ଦେଖାଗଲା ନାହିଁ । କେବଳ ମୁହଁଟି ତାଙ୍କର ଗାମ୍ଭୀର୍ଯ୍ୟରେ ଭରିଉଠୁଥାଏ । ଦୁନିଆ ଯାକର ସବୁ ଚିନ୍ତା ଯେପରି ଏକାଠି ହୋଇ ସେ ଶ୍ରେଷ୍ଠ ମୁଣ୍ଡଟି ଭିତରେ କିଲ୍‌ବିଲ୍ ହେଉଥାନ୍ତି— ମୁହଁର ଗମ୍ଭୀରତା ଏଇଆ ସୂଚନା ଦେଉଥାଏ । କିନ୍ତୁ ତାଙ୍କୁ କେହି କେବେ ହସିବା ଦେଖି ନାହିଁ । ମାତ୍ର ଥରୁଟିଏ ସେ ପ୍ରାଣଖୋଲା ହସ ହସିଥିଲେ ।

ଥରେ ସେ ଜଣେ ବନ୍ଧୁଙ୍କୁ ଇଉକ୍ଲିଡ୍‌-ଜ୍ୟାମିତି ପଢ଼ିବାକୁ ଦେଇଥିଲେ । କିଛିଦିନ ପରେ ବନ୍ଧୁଙ୍କୁ ପଚାରିଲେ, 'ବହିଟି କିପରି ଲାଗିଲା ?' ବନ୍ଧୁ ଉତ୍ତରରେ କହିଲେ, 'ସେ ବହି ପଢ଼ି ହେବ କ'ଣ ?' ଏତିକିରେ ସେ ଜୋରରେ ହସିଉଠିଥିଲେ । ବାସ୍ତବିକ, ଯାହା ପାଖରେ ଜ୍ୟାମିତି ଅମୂଲ୍ୟ ସଂପଦ, ସେ ଅନ୍ୟ ଲୋକ ପାଖରୁ ଏପରି ମୂର୍ଖାମି ଉତ୍ତର ପାଇଲେ କିଏ ନହସି ରହିପାରନ୍ତା !

ସେ ଯେଉଁସବୁ ବିଜ୍ଞାନ ଆବିଷ୍କାର କରିଥିଲେ, ତାର ମୂଳ ସତ୍ୟଗୁଡ଼ିକୁ ଏକାଠି କରିବା ପାଇଁ ସେ ଗୋଟିଏ ବହି ଲେଖିଲେ । ଏ ବହିଟିର ନାଁ ହେଉଛି 'ପ୍ରିନ୍‌ସିପିଆ' । ଏ ବହିର ଲେଖା ୧୬୮୫ରେ ଆରମ୍ଭ ହୋଇ ୧୬୮୭ରେ ଶେଷ ହୋଇଥିଲା । ନିଜକୁ ପ୍ରକାଶ କରିବାର ବ୍ୟାକୁଳତା କେବେହେଲେ ତାଙ୍କ ଭିତରେ ନଥିଲା । ଏଣୁ ଲେଖା ସରିଥିଲେ ମଧ୍ୟ ସେ ବହିଟିକୁ ଛପାଇବା ପାଇଁ ସେ ବିଶେଷ ଆଗ୍ରହ ଦେଖାଇଲେ ନାହିଁ । ବୈଜ୍ଞାନିକ ବନ୍ଧୁ ହାଲି ନିଜ ସ୍ୱଳ୍ପ ଆୟରୁ ଖର୍ଚ୍ଚ କରି ଏ ବିଖ୍ୟାତ ବହିଟିକୁ ଛପାଇଲେ । ଆଉ ମଧ୍ୟ ବନ୍ଧୁ ହାଲିଙ୍କ ସାହାଯ୍ୟ ଓ ଉତ୍ସାହ ପାଇ ନଥିଲେ ଏ ବହିଟିର ଲେଖା ମଧ୍ୟ ସମ୍ପୂର୍ଣ୍ଣ ହୋଇନଥାନ୍ତା । ଏପରି ବନ୍ଧୁ ଖୁବ୍ କ୍ୱଚିତ ଦେଖାଯାନ୍ତି ।

'ପ୍ରିନ୍‌ସିପିଆ' ବହିଟି ପ୍ରକାଶ ପାଇଲା ପରେ ବୈଜ୍ଞାନିକ ମହଲରେ ଖୁବ୍ ହୁଲସ୍ଥୂଲ ଖେଳିଗଲା । କିନ୍ତୁ କେଇ ଜଣଙ୍କ ଛଡା ଏ ବହିରୁ କେହି କିଛି ବୁଝି ପାରିଲେ ନାହିଁ । ଜଣେ ଦି ଜଣ ଏ ବହିରେ ଥିବା ତତ୍ତ୍ୱଗୁଡ଼ିକର ସମାଲୋଚନା ମଧ୍ୟ କଲେ । କିନ୍ତୁ ଶେଷରେ ସେମାନଙ୍କୁ ଚୁପ୍ ରହିବାକୁ ହେଲା । ବୈଜ୍ଞାନିକ ସତ୍ୟତା ପାଖରେ ଈର୍ଷାପରାୟଣ ଲୋକଙ୍କ ଚକ୍ରାନ୍ତ ହାର ମାନିଲା ।

ନିଉଟନ ତାଙ୍କ 'ପ୍ରିନ୍‌ସିପିଆ' ବହି ଲେଖୁଥିବା ବେଳେ ଇଂଲଣ୍ଡରେ ଗୃହଯୁଦ୍ଧ ଦେଖାଦେଇଥିଲା । ରାଜା ଦ୍ୱିତୀୟ ଜେମ୍‌ସଙ୍କ ସ୍ୱେଚ୍ଛାଚାରୀ ନୀତି ଯୋଗୁଁ ଦେଶସାରା ଗଣ୍ଡଗୋଳ ସୃଷ୍ଟି ହୋଇ ଥିଲା ।

ଖ୍ରୀଷ୍ଟାନ ଧର୍ମରେ ଦୁଇ ପ୍ରକାର ମତ ଅଛି । ଗୋଟିଏ ପ୍ରୋଟେଷ୍ଟାଣ୍ଟ; ଅନ୍ୟଟି କ୍ୟାଥଲିକ୍ । ପ୍ରୋଟେଷ୍ଟାଣ୍ଟ ମତ ସରକାରୀ ଧର୍ମ ଭାବରେ ଗୃହୀତ ହୋଇଥାଏ ଏବଂ ପ୍ରାୟ ବଡ଼ ବଡ଼ ଲୋକମାନେ ପ୍ରୋଟେଷ୍ଟାଣ୍ଟ ଧର୍ମାବଲମ୍ବୀ । ରାଜା ଦ୍ୱିତୀୟ ଜେମ୍‌ସ ରାଜା ହେବାପରେ ପୁଣି କ୍ୟାଥଲିକ୍ ମତକୁ ପ୍ରତିଷ୍ଠା କରିବାକୁ ଇଚ୍ଛାକଲେ । ଫଳରେ 'ପ୍ରୋଟେଷ୍ଟାଣ୍ଟ'ଙ୍କ ଉପରେ ଚାରିଆଡ଼େ ଚାଲିଲା ଆକ୍ରମଣ । ଏ ଆକ୍ରମଣ ଶିକ୍ଷା ବିଭାଗକୁ ମଧ୍ୟ ଛାଡ଼ିଲା ନାହିଁ । ତାଙ୍କର କେତେକ କାନକୁହା ଲୋକ କହିଲେ ଯେ, କେମ୍ବ୍ରିଜ ଓ ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ହେଉଛି ପ୍ରୋଟେଷ୍ଟାଣ୍ଟଙ୍କ ଆଡ୍ଡା ସ୍ଥାନ । ଏଣୁ ସେ ଆଡ୍ଡାକୁ ଭାଙ୍ଗିବା ପାଇଁ ସେ ନିର୍ଦ୍ଦେଶ ଦେଲେ । ଏ ରୂପ ଅନ୍ୟାୟର ପ୍ରତିରୋଧ କରିବା ପାଇଁ ବିଶ୍ୱବିଦ୍ୟାଳୟ ଗୋଟିଏ ପ୍ରତିନିଧି ଦଳ ଗଢ଼ିଲେ ।

ଶିକ୍ଷା ସମ୍ବନ୍ଧୀୟ ସବୁଠାରୁ ବଡ଼ ସରକାରୀ ବିଭାଗର ନାମ —'ହାଇକୋର୍ଟ ଅଫ୍ କମିଶନ୍' । ଏ କମିଶନ୍‌କୁ ବିଶ୍ୱବିଦ୍ୟାଳୟର

ପ୍ରତିନିଧି ଦଳ ଭେଟିଲେ । ନିଉଟନ ଏ ପ୍ରତିନିଧି ଦଳର ଜଣେ ସଭ୍ୟ ଥିଲେ ଏବଂ ନିଉଟନଙ୍କ ଦୃଢ଼ତା ଯୋଗୁ ସେମାନେ ଶେଷ ପର୍ଯ୍ୟନ୍ତ ରହିଲେ ଅବିଚଳିତ । ଆଇନ ସେମାନଙ୍କ ସପକ୍ଷରେ ଥିଲା ।

ଏଇପରି ଭାବରେ ନିଉଟନ ରାଜନୀତିରେ ପଶିଲେ ଏବଂ ନୂଆ ପାର୍ଲିଆମେଣ୍ଟ ନିର୍ବାଚନ ବେଳେ ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ତରଫରୁ ସଭ୍ୟ ଭାବରେ ନିର୍ବାଚିତ ହେଲେ । ସେତେବେଳେ ପାର୍ଲିମେଣ୍ଟରେ 'ହୁଇଗ୍' ଦଳର ପ୍ରତିପତ୍ତି ଥାଏ । ନିଉଟନ ସେଇ ଦଳଭୁକ୍ତ ହେଲେ । ବେଳେବେଳେ ଦଳର ନେତାମାନଙ୍କୁ ସେ ପରାମର୍ଶ ମଧ୍ୟ ଦେଉଥିଲେ । ନିଉଟନ ବକ୍ତୃତା ଦେଇ ପାରୁ ନଥିଲେ । ଏଣୁ ପାର୍ଲିମେଣ୍ଟରେ ସେ କେବେ କିଛି କହି ନାହାନ୍ତି । ସେଥିପାଇଁ ଲୋକମାନେ ପରିହାସ କରି କହନ୍ତି, "ନିଉଟନ ଥରେ ମାତ୍ର ପାର୍ଲିମେଣ୍ଟରେ କହିଥିଲେ—'ଚପ୍ରାଶୀ ! ଝିଡ୍‌କିଟା ଖୋଲି ଦେ ତ !"

୧୬୯୦ ଖ୍ରୀଷ୍ଟାବ୍ଦରେ ନିଉଟନଙ୍କ ମାତୃବିୟୋଗ ହେଲା । ମୃତ୍ୟୁ ପୂର୍ବରୁ ସେ ଗାଁକୁ ଆସି ମା'ଙ୍କର ଖୁବ୍ ସେବା-ଶୁଶ୍ରୂଷା କରିଥିଲେ । ରାତି ରାତି ମା'ଙ୍କ ବିଛଣା ପାଖରେ ଜଗିବସି ମଧ୍ୟ ସେ ମୃତ୍ୟୁମୁଖରୁ ମା'ଙ୍କୁ ବଞ୍ଚେଇ ପାରିଲେ ନାହିଁ । ଏତେବଡ଼ ଶୋକ ସେ ଜୀବନରେ କେବେ ପାଇ ନଥିଲେ ।

ନିରଞ୍ଜନ ଆଜୀବନ ଥିଲେ ଅବିବାହିତ । ତାଙ୍କର ଅତ୍ୟଧିକ ଅନ୍ୟମନସ୍କତା ଯୋଗୁ ସେ ନିଜେ ବିବାହ କଲେନାହିଁ ବୋଲି କେତେକ କହନ୍ତି । ସେ ନିଜ ଭାବନାରେ ଏତେ ତନ୍ମୟ ଥାନ୍ତି ଯେ ନିଜ ବେଶ-ଭୂଷା ପ୍ରତି ମଧ୍ୟ ଦୃଷ୍ଟି ନଥାଏ । କେତେବେଳେ ନେକ୍‌ଟାଇ ନ ବାନ୍ଧି ବାହାରକୁ ଚାଲିଆସନ୍ତି । କେତେବେଳେ ଯୋଡା ଫିତା ମଧ୍ୟ ଲାଗିନଥାଏ । ତାଙ୍କ ବିବାହ ସମ୍ବନ୍ଧରେ ଗୋଟିଏ ସୁନ୍ଦର ଗଳ୍ପ ମଧ୍ୟ ଲୋକ ମୁଖରୁ ଶୁଣାଯାଏ । ଥରେ ସେ ଗୋଟିଏ ଝିଅକୁ ବାହା ହେବାପାଇଁ ଇଚ୍ଛାକଲେ । ଝିଅଟିର ମଧ୍ୟ ସେଥିରେ ମତ ଥାଏ । ଦିନେ ଏହି ବିବାହ ପ୍ରସ୍ତାବ ବାଢ଼ିବା ପାଇଁ ସେ ଝିଅ ପାଖକୁ ଗଲେ । ଝିଅଟିର ହାତଟିକୁ ନିଜ ହାତରେ ଧରି କଥାବାର୍ତ୍ତା କରୁଥାନ୍ତି । ଏତିକିବେଳେ ହଠାତ୍ ବିଜ୍ଞାନର ଗୋଟିଏ ଗଣିତର ତତ୍ତ୍ୱ ତାଙ୍କର ମନେ ପଡ଼ିଯିବାରୁ ସେ ଭାବିବାକୁ ଲାଗିଲେ । ଝିଅଟିର ହାତ ଯେମିତି ତାଙ୍କ ହାତ ଭିତରେ ଥାଏ । କିଛି ସମୟ କଟିଲା । ସେଇ ଚିନ୍ତା ଭିତରେ ସେ ସିଗାରେଟ୍ ଖାଇବାକୁ ଇଚ୍ଛାକଲେ । ବିଆସିଲିଟି କାଢ଼ି ଝିଅହାତଟିକୁ ସିଗାରେଟ୍ ପାଇପ୍ ମନେକରି ଯେମିତି ସେଥିରେ ନିଆଁ ଲଗାଇଦେଲେ ଝିଅଟି ପାଟିକରି ଉଠିଲା । ତା ପରେ ନିରଞ୍ଜନଙ୍କ ଖିଆଲ ହେଲା ଯେ ସେଇଟି ପାଇପ୍ ନୁହେଁ । ତାଙ୍କର ବିବାହ ପ୍ରସ୍ତାବ ସେଇଠି ବନ୍ଦ ରହିଲା । ନିରଞ୍ଜନ ଠିକ୍ କଲେ, ଏପରି ଅନ୍ୟମନସ୍କ ଲୋକ ପକ୍ଷେ ବିବାହ କରିବା ଅନୁଚିତ ।

ନିରଞ୍ଜନ ଲୋକମାନଙ୍କ ସଙ୍ଗେ ବେଶି ମିଶିବାକୁ ଭଲ ପାଉ ନଥିଲେ । ସବୁବେଳେ ଏକୁଟିଆ ରହିବାକୁ ସେ ପସନ୍ଦ କରୁଥିଲେ । ଜୀବଜନ୍ତୁମାନଙ୍କୁ ସେ ଭଲ ପାଆନ୍ତି ବୋଲି ଲୋକ ମୁଖରୁ ଶୁଣାଯାଏ । ସେ ଗୋଟିଏ କୁକୁର ପୋଷିଥିଲେ । ନାଁ-ଡାଇମଣ୍ଡ । ଟେବୁଲ

ଉପରେ ଜଳୁଥିବା ମହମବତୀଟିକୁ ଡାଇମଣ୍ଡ ଥରେ ପକେଇଦେବା ଫଳରେ କେତେକ ଖାତାପତ୍ର ଜଳିଗଲା । ସେଥିରେ ବିଜ୍ଞାନ ସମ୍ବନ୍ଧୀୟ କେତେକ ବିଷୟ ଲେଖା ହୋଇଥିଲା । ସେ ଶାସନ କରିବା ପରିବର୍ତ୍ତେ ଅତି ଦୁଃଖରେ ଡାଇମଣ୍ଡ୍‌କୁ ଏତିକି ମାତ୍ର କହିଥିଲେ, "ଡାଇମଣ୍ଡ୍ ! "ତୁ ଜାଣୁନା ତୁ ଜଗତର କେତେ ବଡ଼ କ୍ଷତି କଲୁ ।"

ସେ ବିଲେଇ ମଧ୍ୟ ପୋଷୁଥିଲେ । ସେ ନଥିବାବେଳେ ଘର ଭିତରେ ବିଲେଇ ଯିବା ଆସିବା କରିବା ପାଇଁ କବାଟରେ ଛୋଟ କଣାଟିଏ କରି ଦେଇଥାନ୍ତି ।

ଏହିପରି ନାନା ପ୍ରକାର ଗଳ୍ପ ତାଙ୍କୁ କେନ୍ଦ୍ର କରି ଶୁଣାଯାଏ । ଜୀବଜନ୍ତୁ ପ୍ରତି ଅତ୍ୟଧିକ ଶ୍ରଦ୍ଧାରୁ ଜଣାଯାଏ ଜୀବହତ୍ୟାର ସେ ଘୋର ବିରୋଧୀ ଥିଲେ ।

ପାର୍ଲିମେଣ୍ଟରେ ନିଉଟନଙ୍କ ଦଳ କ୍ଷମତା ପାଇବାରେ ସେ ଗୋଟିଏ ସରକାରୀ କାମ ପାଇଁ ଚେଷ୍ଟାକଲେ । ଶେଷରେ ଗୋଟିଏ ଟଙ୍କାଶାଳରେ ସର୍ବୋଚ୍ଚକର୍ତ୍ତା ରୂପେ ସେ ନିଯୁକ୍ତ ହେଲେ । ସେ ଯେମିତିକା କାମଟିଏ ଚାହୁଁ ଥିଲେ ସେହିପରି ତାଙ୍କୁ ମିଳିଗଲା । ଖଟଣୀ କମ୍, ଦରମା ବେଶୀ । ବାର୍ଷିକ ପ୍ରାୟ ୩୦ ହଜାର ଟଙ୍କା ଦରମା । ତାଙ୍କର ସରକାରୀ ଥିଲେ କନଡୁଇଟ୍ ସାହେବ । ପରେ ଏହି କନଡୁଇଟ୍‌ଙ୍କ ସହିତ ତାଙ୍କ ଭଣିଜୀର ବିବାହ ହେଲା । ପ୍ରଥମେ ତାଙ୍କର ଜୀବନୀ ମଧ୍ୟ ଲେଖିଥିଲେ ଏହି କନଡୁଇଟ୍ ସାହେବ । ଚାକିରୀ ପାଇବା ପରେ ସେ କେମ୍ବ୍ରିଜ ଛାଡ଼ି ସ୍ଥାୟୀ ଭାବେ ଲଣ୍ଡନରେ ରହିବାକୁ ଲାଗିଲେ । ପାଖରେ ଏହି ଭଣିଜୀଟିକୁ ରଖିଲେ ଦେଖାଶୁଣା କରିବାପାଇଁ ।

ଲଣ୍ଡନରେ ରହିବା ପରେ ସେ ନିୟମିତ ଭାବେ ରୟେଲ ସୋସାଇଟି କରି ଯିବା ଆସିବା କଲେ । ରୟେଲ ସୋସାଇଟିରେ ଅନେକ ସମୟରେ ପ୍ରତିଯୋଗିତା ହୁଏ । ପାଣ୍ଡିତ୍ୟ ପ୍ରତିଯୋଗିତା । ବୈଜ୍ଞାନିକମାନେ ହଠାତ୍ ଗୋଟିଏ ପ୍ରଶ୍ନ ପଚାରି ଅନ୍ୟମାନଙ୍କଠାରୁ ତାର ଉତ୍ତର ଚାହାନ୍ତି । ଏହିପରି ଅନେକ ବିଷମ ପ୍ରଶ୍ନର ଉତ୍ତର ଦେଇଛନ୍ତି ନିଉଟନ ।

୧୭୦୩ ସାଲରେ ସେ ରୟାଲ ସୋସାଇଟିର ସଭାପତି ରୂପେ ନିର୍ବାଚିତ ହେଲେ ଏବଂ ମୃତ୍ୟୁପର୍ଯ୍ୟନ୍ତ ସେ ଏହି ପଦରେ ଅଧିଷ୍ଠିତ ଥିଲେ । ପ୍ରତିବର୍ଷ ସଭାପତି ପଦ ପାଇଁ ସେ ନିର୍ବାଚିତ ହୁଅନ୍ତି । ସଭାପତି ହେବାର ବର୍ଷକ ପରେ ସେ ସାତଟି ଲେନ୍ସରେ ତିଆରି ଗୋଟିଏ କାଚ ସୋସାଇଟିକୁ ଉପହାର ଦେଇଥିଲେ । ଯେ କୌଣସି ଜିନିଷ ବା ଧାତୁକୁ ପୋଡ଼ିଦେବା ଏବଂ ତରଳାଇ ଦେବାର ଶକ୍ତି ଏହି କାଚର ଥିଲା ।

୧୭୦୪ ସାଲରେ ଆଲୋକ ସମ୍ବନ୍ଧରେ ସେ ଗୋଟିଏ ବହି ଲେଖିଲେ । ବହିଟି ଅଳ୍ପ ଦିନ ମଧ୍ୟରେ ବିଭିନ୍ନ ଭାଷାରେ ଅନୁବାଦ ହୋଇ ବିକ୍ରି ହେଲା । ଲାଟିନ ଭାଷାର ଅନୁବାଦ ପଢ଼ି ସେ ଏତେ ଖୁସି ହେଲେ ଯେ, ଅନୁବାଦକଙ୍କୁ ପାଞ୍ଚଶ ପାଉଣ୍ଡ ବକ୍‌ସିସ ଦେଇଥିଲେ ।

୧୭୦୫ ସାଲରେ ସେ 'ସାର' ଉପାଧିରେ ଭୂଷିତ ହେଲେ । ତାଙ୍କ ପୂର୍ବରୁ କୌଣସି ବୈଜ୍ଞାନିକଙ୍କୁ 'ସାର' ଉପାଧି ଦିଆଯାଇ ନଥିଲା । ଏହି ବର୍ଷ ପୁଣି ପାର୍ଲାମେଣ୍ଟ ନିର୍ବାଚନ ହେବାରୁ ସେ ପ୍ରାର୍ଥୀ ହେଲେ; କିନ୍ତୁ ହାରିଗଲେ । ରାଜନୀତି ଉପରୁ ତାଙ୍କ ଶ୍ରଦ୍ଧା ତୁଟିଗଲା । ସେ ଆଉ ସେଥିରେ ମୁଣ୍ଡ ନ ଖେଳାଇ ଶେଷ ଜୀବନ ପର୍ଯ୍ୟନ୍ତ ରୟେଲ ସୋସାଇଟି କାମରେ ହିଁ କଟେଇଥିଲେ ।

ରୟେଲ ସୋସାଇଟିର କେବଳ ବିଜ୍ଞାନ ଆଲୋଚନା ହୁଏ ନା, ଦଳାଦଳି ମଧ୍ୟ ଚାଲେ । ନିଉଟନଙ୍କ ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ଥିଲେ ହୁକ୍ ସାହେବ । ସେ ୧୭୦୫ରେ ମରିଯିବା ଫଳରେ ସୋସାଇଟିରେ ନିଉଟନହିଁ ହେଲେ ଅପ୍ରତିଦ୍ୱନ୍ଦ୍ୱୀ । ସେତେବେଳେ ଆଉ ଦୁଇଜଣ ପଣ୍ଡିତ ମଧ୍ୟ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ । ଜଣେ ହେଉଛନ୍ତି ଇଂଲଣ୍ଡର ରାଜକୀୟ ଜ୍ୟୋତିଷ; ଅନ୍ୟଜଣଙ୍କ ଜର୍ମାନୀର ଶ୍ରେଷ୍ଠ ବୈଜ୍ଞାନିକ ଲାଇବ୍‌ନିଜ୍‌ । ଲାଇବ୍‌ନିଜ୍‌ଙ୍କ ସହିତ ବିବାଦ ଶେଷ ପର୍ଯ୍ୟନ୍ତ ଚାଲିଥିଲା ଏବଂ ଲାଇବ୍‌ନିଜ୍‌ଙ୍କ ମୃତ୍ୟୁପରେ ହିଁ ସବୁ ବିବାଦ ଶେଷ ହେଲା । ନିଉଟନଙ୍କ ଜୀବନରେ ଲାଇବ୍‌ନିଜ୍‌ଙ୍କ ସହ ମନାନ୍ତରଟି ହେଲା ସବୁଠୁ ବଡ଼ କଳଙ୍କ । ଏହା ଫଳରେ ସେ କେତେକ ମହଲରେ ଅପ୍ରିୟ ହୋଇ ପଡ଼ିଥିଲେ । ଯେଉଁ ଅଙ୍କ ଶାସ୍ତ୍ରର ମୂଳ ସତ୍ୟ ( କାଲ୍‌କୁଲସ ଗଣିତ ) ନିଉଟନ ଆବିଷ୍କାର କରିଥିଲେ । ସେଇଟିକୁ ପରେ ଲାଇବ୍‌ନିଜ୍ ମଧ୍ୟ ବାହାର କରିଥିଲେ । ଦୁହିଙ୍କ ଭିତରେ ଏତିକି ପାର୍ଥକ୍ୟ ଯେ ନିଉଟନ ସେଇଟିକୁ ନିଜସ୍ୱ ସମ୍ପତ୍ତି ଭାବି ଗୋପନ ରଖିଥିଲେ, କିନ୍ତୁ ଲାଇବ୍‌ନିଜ୍ ଜଗତର କଲ୍ୟାଣ ଦୃଷ୍ଟିରୁ ସେଇଟିକୁ ପ୍ରକାଶ କରିଦେଲେ । ଯାହା ଫଳରେ ଜଗତରେ ସେ ହେଲେ ସମ୍ମାନପ୍ରଦ । ଶେଷରେ ନିଉଟନ ନିଜର ଭୁଲ ବୁଝି ପାରିଥିଲେ ଏବଂ ନିଜ ପ୍ରିନ୍‌ସିପିଆ ବହିରେ ଲାଇବ୍‌-ନିଜ୍‌ଙ୍କୁ ପ୍ରଶଂସା କରି ଲେଖିଥିଲେ ।

ନିଉଟନଙ୍କ ଶେଷ ବୟସରେ ଇଂଲଣ୍ଡର ରାଜା ଥିଲେ ପ୍ରଥମ ଜର୍ଜ । ରାଜକୁମାରୀ କାରୋଲିନ୍ ଥିଲେ ନିଉଟନଙ୍କ ଭକ୍ତ ଏବଂ ସେ ନିଉଟନଙ୍କ ଅମଳରେ ଜନ୍ମ ହୋଇଥିବାରୁ ନିଜକୁ ଧନ୍ୟ ମନେ କରୁଥିଲେ ।

ଅଶି ବର୍ଷରେ ପାଦ ଦେଲେ ନିଜଂଟନ ।

ଏ ବୟସରେ ମଣିଷର ବୁଦ୍ଧି ଖୁବ୍ ପାକଳ ହୋଇଯାଇଥାଏ କିନ୍ତୁ ନୂଆ ଜିନିଷ ଚିନ୍ତା କରିବାର ଶକ୍ତି ପ୍ରାୟ ଲୋପ ପାଇଥାଏ । ନିଜଂଟନଙ୍କର ମଧ୍ୟ ସେଇଆ ହେଲା । ସେ ଖୁବ୍ ଦୁର୍ବଳ ହୋଇ ପଡ଼ିଲେ । ଏଇ ସୁଯୋଗରେ ରୋଗ ସବୁ ତାଙ୍କ ଆଡ଼କୁ ଆଗେଇ ଆସିଲେ । କୌଣସି କଥା ମନେ ରଖିବାକୁ ମଧ୍ୟ ସେ ହେଲେ ଅକ୍ଷମ । ନିଜ ପଢ଼ାଘର ଭିତରେ ନିଃସଙ୍ଗ ଭାବରେ କାଳ କାଟିବାକୁ ହେଲା ତାଙ୍କୁ । ଶେଷରେ ୧୭୨୨ରେ ସେ ବାତରୋଗ ଦ୍ୱାରା ଆକ୍ରାନ୍ତ ହେଲେ ।

ଦୁଇବର୍ଷ ପରେ ବାତରୋଗର ପ୍ରକୋପ ବଢ଼ିଲା । ସହରରେ ରହିଲେ ଦେହ ଆହୁରି ଖରାପ ହୋଇପାରେ ଡାକ୍ତରମାନେ ମତ ଦେବାରୁ ସେ ସହର ଛାଡ଼ି ଅଲ୍ପଦିନ ପାଇଁ ଚାଲି ଆସିଲେ ଗାଁକୁ ।

କିନ୍ତୁ ଯେ ସବୁଦିନ ସହରରେ କଟେଇ ଆସିଛି ସେ ସୁଦୂର ପଲ୍ଲୀରେ ବନ୍ଦୀ ଭାବରେ ଦିନ କଟେଇବ ବା କିମିତି ? ଗାଁରେ ଦିନ କେତୋଟି ରହି ସେ ପୁଣି ଚାଲି ଆସିଲେ ସହରକୁ । କୌଣସି ପ୍ରକାର କାୟିକ ଓ ମାନସିକ ଶ୍ରମ କରିବାକୁ ଡାକ୍ତରଙ୍କ କଡ଼ା ଆଦେଶ ଥିବା ସତ୍ତ୍ୱେ ଦେହ ଯେତେବେଳେ ଟିକିଏ ଭଲ ଲାଗେ ସେ ଲାଗିଯାନ୍ତି କୌଣସି ନା କୌଣସି କାମରେ ।

ଆହୁରି କେତୋଟି ବର୍ଷ କଟିଲା ।

୧୭୨୭ ଖ୍ରୀଷ୍ଟାବ୍ଦ । ଫେବୃୟାରି ମାସ ଆଡ଼କୁ ଦେହ ଟିକିଏ ଭଲ ଲାଗିଲା । ରୟେଲ ସୋସାଇଟିରେ ସଭାପତିତ୍ୱ କରିବା ପାଇଁ ସେ ସହରକୁ ଆସିଲେ । ଏହାପରୁ ଫେରି ସେ ହେଲେ ଶଯ୍ୟାଶାୟୀ ।

ବାତ ରୋଗର ଯନ୍ତ୍ରଣା ଧୈର୍ଯ୍ୟସହକାରେ ସହି ବିଛଣା ଉପରେ ପଡ଼ିଥାନ୍ତି । ଯନ୍ତ୍ରଣା ହେଉଥିଲେ ବି ଟିକିଏ ହେଲେ ଉଁ କି ଚୁଁ ନ ହୋଇ ଚୁପ୍ ହୋଇ ବିଛଣା ଉପରେ ପଡ଼ିରହିଥାନ୍ତି । ମଝିରେ ମଝିରେ ଯେତେବେଳେ ଭଲ ଲାଗେ ପାଖରେ ଥିବା ବନ୍ଧୁମାନଙ୍କ ସହିତ ଖୁସି ଗପ କରନ୍ତି ।

ଆହୁରି ୧୫ଟି ଦିନ କଟିଲା ।

ସକାଳେ ଟିକିଏ ଦେହ ଭଲ ଲାଗିଲା । ଖବର କାଗଜ ମାଗି ପଢ଼ିଲେ । ପାଖରେ ଥିବା ଡାକ୍ତରଙ୍କ ସଙ୍ଗେ କଥାବାର୍ତ୍ତା ବି କଲେ । କିନ୍ତୁ ସନ୍ଧ୍ୟା ଆଡ଼କୁ ହଠାତ୍ ଅଚେତ ହୋଇପଡ଼ିଲେ । ଯେତେ ଚେଷ୍ଟା କଲେ ସୁଦ୍ଧା ଚେତନା ଆଉ ଫେରିଲା ନାହିଁ । ଶେଷ ରାତିରେ ତାଙ୍କର ମୃତ୍ୟୁ ହେଲା । ସେ ଦିନ ତା:୧. ହୋଇଥାଏ ୧୮, ମାର୍ଚ୍ଚ —୧୭୨୭ ।

ରାଜକୀୟ ସମ୍ମାନ ସହିତ ତାଙ୍କୁ ଏଷ୍ଟମିନଷ୍ଟର କବର ଖାନାରେ କବର ଦିଆଗଲା ।

ମୃତ୍ୟୁବେଳେ ନିଉଟନଙ୍କ ସମ୍ପତ୍ତିର ପରିମାଣ ଥିଲା ପ୍ରାୟ ୩୨ ହଜାର ଟଙ୍କା । ସେ ସବୁ ତାଙ୍କ ପୃତୁରା ଓ ଝିଆରୀମାନେ ପାଇଲେ ।

ଦୀର୍ଘ ୮୫ ବର୍ଷ ଧରି ଯେଉଁ ଜୀବନ-ଧାରାଟି ପୃଥିବୀ ଉପରେ ବହୁଥିଲା, ସେଇଟି ହଠାତ୍ ଶୁଖିଗଲା ସତ; କିନ୍ତୁ ମଣିଷ ସମାଜରେ ଜ୍ଞାନ-ବିଜ୍ଞାନର ଯେଉଁ ଧାରାଟି ସେ ଝରାଇ ଦେଇଗଲା, ତାହା କେବେ ଶୁଖିବାର ନୁହେଁ ।

ବିଜ୍ଞାନ-ମଣିଷ ନିଉଟନଙ୍କ ମୃତ୍ୟୁ ନାହିଁ ।



